ପୁରୁଷୋତ୍ତମ ଦାସଙ୍କ ରଚିତ

# କାଞ୍ଚିକାବେରୀ ଚରିତ ।

"କଟକ ପୁସ୍ତକ ପ୍ରକାଶକ କମ୍ପାନୀ" ଦ୍ୱାରା
ପ୍ରଥମବାର ପ୍ରକାଶିତ ।

( ଇଉନିୟନ ଛାପାଖାନାରେ ମୁଦ୍ରିତ )



PRINTED AT THE UNION PRINTING WORKS
BY P. C. MUNDUL,
CUTTACK.
1912.

ମୂଲ୍ୟ ଟ ୦/୨ ମାତ୍ର ।

# କାଞ୍ଚିକାବେରୀ ଚରିତ ।

---

## ପ୍ରଥମ ଛାନ୍ଦ ।

ଜୟ ଜୟ ଜଗନ୍ନାଥ ଅରତ ନାଶନ । ଜୟ ଜୟ ଜଗନ୍ନାଥ ଗରୁଡ଼ ଅସନ । ୧ । ଜୟ ଜୟ ଜଗନ୍ନାଥ ଦୁଃଖିଙ୍କ ସୋଦର । ଜୟ ଜୟ ଦୀନବନ୍ଧୁ ପତିତ ଉଦ୍ଧର । ୨ । ତୁମ୍ଭେ ମହାପ୍ରଭୁ ନ ରଖିଲେ କେ ରଖିବ । ସତେ କି ଜନମ ଅନ୍ଧ ଜଗତ ଦେଖିବ । ୩ । ଦାରୁବ୍ରହ୍ମ ରୂପେ ନୀଳାଚଳେ ବିଜେ ହର । ଅନନ୍ତ ନାମ ଯାହାର ଅନ୍ତ କେହ୍ନୁ କର । ୪ । ଏ ଭବସାଗରେ ଭାସିଯାଉଛୁ ଅରକ୍ଷ । ଦୁର୍ଲକ୍ଷ କାଳେ ରଖିଛ କେତେ ଲକ୍ଷ ଲକ୍ଷ । ୫ । କମଳାବଲ୍ଲଭ ତୁମ୍ଭେ ଗୋପୀଙ୍କ ଜୀବନ । ପରମପୁରୁଷ ମୂର୍ତ୍ତି ପତିତପାବନ । ୬ । ଦଇତ ବନାଶି ତୁମ୍ଭ ନାମ ଦଇତ୍ୟାରି । ଗୋବିନ୍ଦ ନାମ ପାଇଲ ଇନ୍ଦ୍ର ଗର୍ବ ହାରି । ୭ । ଧ୍ରୁବ ପ୍ରହଲ୍ଲାଦଙ୍କୁ ଯେ ସ୍ୱର୍ଗେ ବାସ ଦେଲ । ସ୍ତମ୍ଭରୁ ଉପୁନ ହିରଣାକ୍ଷକୁ ବଧିଲ । ୮ । ପାଦେ ଦଳିଲ କାଳୀକ ବଳକୁ ପାତାଳେ । ପୁଣି ହେଁ ସୁଦାମାକୁ କଲ ପ୍ରଭୁ ଅଜାମିଳେ । ୯ । ପୂର୍ଣ୍ଣବ୍ରହ୍ମ ପୂର୍ଣ୍ଣାନନ୍ଦ ସନାତନରୂପି । ଗୋପେ ସେବା କରୁଥିଲେ ଭକ୍ତଭାବେ ଗୋପୀ । ୧୦ । ତୁମ୍ଭ ମହିମା ପ୍ରକାଶ କରିବିଇ ମୁହିଁ । ଅନୁଗ୍ରହ କର କଣ୍ଠେ ପଦ ଦିଅ କହି । ୧୧ । ଆଦ୍ୟ ପ୍ରାନ୍ତ ଭାବରେ ଯେ ପୂରିଥିବ ରସ । ଅଜ୍ଞାନ ବାଳୁତ ବୁଦ୍ଧି ଲୋଡ଼ଇ ସାହାସ । ୧୨ । ପଙ୍କଜଲୋଚନ ପଦ୍ମପାଦେ ଆଶ ରହୁ । କହେ ପୁରୁଷୋତ୍ତମ ଦାସ ବିଘ୍ନ ତାହା ନୋହୁ । ୧୩ ।

——:o:——

## ଦ୍ୱିତୀୟ ଛାନ୍ଦ ।

ଏଥୁ ଅନନ୍ତରେ କ୍ଷେତ୍ରବର କଥା ଶୁଣ । ଶଙ୍ଖନାଭି ମଣ୍ଡଳରେ ବିଜେ ଭଗବାନ ।୧। ଖଟିଅଛନ୍ତି ସୂଆର ସେବକ ସହିତେ । ସ୍ନାନବେଦୀମଣ୍ଡପ ପରେ ପ୍ରଭୁ ଜଗନ୍ନାଥେ ।୨। ଜ୍ୟେଷ୍ଠ ଶୁକ୍ଳ ପୂର୍ଣ୍ଣିମା ଅଟଇ ସେ ଦିନ । ଦୁଇଭାଇ ନାନାରଙ୍ଗେ କରନ୍ତି ସ୍ନାନ ॥ ଶ୍ରାବଣମେଘ ବରଷନ୍ତି ଆନନ୍ଦରେ ମେଳ । ବରୁଣ କୁବେର ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଭାଳ ।୪। ଶୁକ ସନକାଦି ବ୍ରହ୍ମା ଶିବ ଛନ୍ତି ଋଷି । ସ୍ତବ କରୁଛନ୍ତି ଭକ୍ତବୃନ୍ଦେ କୋଟି କୋଟି ।୫। ଛତ୍ରୀ ଚାମର ଅଢ଼େଣୀ ଧରନ୍ତି ବେଢ଼ିଥା । ପଢ଼ିଆରିମାନେ ଯେହ୍ନ ଡାକନ୍ତି ଖୁଣ୍ଟିଥାଇ ।୬। କଳାମୁଖ ଧଳାମୁଖ ପାଉଅଛି ଶୋଭା । ନାସାରେ ଗଜମୁକୁତା ମୁନି ମନଲୋଭା ।୭। ଚନ୍ଦ୍ରରେଖା କି ସୁନ୍ଦର ଦିଶଇ ଦୂରକୁ । ଓଡ଼ିଶା ନୃପତି ସ୍ତୁତି କରଇ ମନକୁ ।୮। କପିଳ ରାଜା ବୋଲିଣ ନାମ ଅଟେ ତାର । ପ୍ରଭୁଙ୍କ କୃପାରୁ ପୁଣି ବହୁତ ଭୂମର ।୯। କଳହମିଶ୍ର ଯେ ବଳହମିଶ୍ର ଯେ ନାମ । କୁଳଭୁଟ ପ୍ରଜ ଯେ ପୁରଥ ବୋଲି ଜାଣ ।୧୦। ପୁତ୍ରମାନେ ରାଜା ତଥା ନ ଦେଖନ୍ତି ଜଣେ । ବୁଲୁଥାନ୍ତି ମନଦୁଃଖେ କେହ୍ନେ ଯାଇ କେଜଣେ ॥ ପୁତ୍ରଙ୍କ ବିଚ୍ଛେଦେ ପିତା କରନ୍ତି ଭାବନା । ପ୍ରଭୁଙ୍କ ସେବାରେ ଲାଗିଥାଇ ଏକା ସିନା ।୧୨। ବଡ଼ସିଂହଦ୍ୱାର ଧୂପରେ ଜଣାଣ କରନ୍ତି । ତ କରତ ଦୀନବନ୍ଧୁ ପୋଡ଼ୁ ମୋ ସମ୍ଭର ।୧୩। ନୃପତି ପଣକୁ ଯୋଗ୍ୟ ନୁହନ୍ତି ନନ୍ଦନ । ତୁମ୍ଭ ସେବା କେ କରିବ ଶ୍ରୀ ମଧୁସୂଦନ ।୧୪। ଏହି ଅଜ୍ଞା ଦେଇ ମୋତେ ଦେ କମଳା-କାନ୍ତ । ବଡ଼ସିଂହଦ୍ୱାର ବଢ଼ଇ ଗଲେ ନୃପନାଥ ।୧୫। ପଣ୍ଡା ପଢ଼ିଆରିମାନେ ଶୋଧିଲେ ଦେଉଳ । ରଜନୀ ହୋଇଲା ଦୁଇ-ପ୍ରହରେକ ବେଳ ।୧୬। ନିଦ୍ରାରେ ମୋହିତ ହୋଇଅଛନ୍ତି ଜଗତ । ରାଜାଙ୍କ ନିଦ୍ରାଠାବରେ ପ୍ରଭୁ ଉପଗତ ।୧୭। ଦାସ-

ବସନ୍ତି ଯେ ପ୍ରଭୁ ଶଙ୍ଖ ଚକ୍ରଧର । କହେ ପୁରୁଷୋତ୍ତମ ଦାସ ଦାସର କିଙ୍କର । ୧୮ ।

——:o:——

ତୃତୀୟ ଛାନ୍ଦ ।

ଏଥୁ ଅନନ୍ତରେ ପ୍ରଭୁ ରାଜାଙ୍କ ପାଶରେ । ନିଦ୍ରାଗତେ କହୁଛନ୍ତି ମନ୍ତ୍ର ହରଷରେ । ୧ । ଶୁଣ ଓଡ଼ିଶା ନୃପତି କ୍ଷେତ୍ର ଅଧିପତି । କାହିଁ ପାଇଁ ମନେ ଚୋର କରଅଛୁ ଭ୍ରାନ୍ତି । ୨ । ମୁଁ ଏବେ କହୁଛି ଯାହା ଶୁଣ ହେତୁଦ୍ୱାରେ । ଓଡ଼ିଶା ନୃପତି ଯେତେ ହେବ କ୍ଷେତ୍ର-ବରେ । ୩ । କାଲି ତୁ ରାଜନ ଯିବୁ ମୋହର ଦରଶନେ । ମୋହର ସଙ୍ଗତରେ ଯିବେ ତୋହର ପୁତ୍ରମାନେ । ୪ । ବାଇଶପାବଚ୍ଛେ ରାଜା ହୋଇବୁ ପ୍ରବେଶ । ଯେ ପିନ୍ଧାଫେର ଚୈତନ୍ୟ ହୋଇ ହସ ହସ । ୫ । ସେହି ଏ ନୀଳାଚଳରେ ହୋଇବ ନୃପତି । ଓଡ଼ିଶା ରାଜନ ହେବ ଗଜରାଜ ମୂର୍ତ୍ତି । ୬ । ଏଥିରେ ସନ୍ଦେହ ତୋର କରୁହିଁ ନ ରଖ । କାହିଁ ପାଇଁ ମହାରାଜା କରୁ ମନ ଦୁଃଖ । ଏତେ କହି ଅନ୍ତର୍ଯ୍ୟାମୀ ଅନ୍ତର୍ଦ୍ଧାନ ହେଲେ । ସ୍ୱପନ ଦେଖି ରାଜନ ଉଠିଣ ବସିଲେ । ୮ । ରଜନୀ ପ୍ରଭାତକାଳ ହୋଇଲାକ ଆସି । ସ୍ନାନ ଶଉଚ ବଢ଼ାଇ ବେଠିଅ ପ୍ରକାଶି । ୯ । ପୁତ୍ରମାନଙ୍କୁ ଘେନିଣ ଚଳିଲେ ରାଜନ । ପ୍ରଥମ ଅବକାଶରେ ଦେବ ଦରଶନ ॥ ମହାସୁଆର ଯେ ପ୍ରଭୁ ସେବାରେ ଖଟନ୍ତି । ଭୋଗମଣ୍ଡପରେ ଆଣି ପ୍ରସାଦ ବାଢ଼ନ୍ତି । ୧୧ । ଏହୁକାଳେ ନୃପତି ଯେ ବାଇଶପାବଚ୍ଛେ । କୁମର ସଙ୍ଗେ ପୁରୁଅ ଅସୁଅଛା ପଛେ । ୧୨ । ଅଗହର ହୋଇ ଆସି ଫେରକୁ ଚୈତନ୍ୟ । ଭାଇମାନଙ୍କର ତହିଁ ଦେହ ନ ସହନ୍ତ ॥ ସମସ୍ତେ ବୋଲନ୍ତି ରାଜା ହୋଇବ ପୁରୁଅ । ଅଉ ପୁତ୍ରମାନେ କେହୁ ହେବତ ଭଳଅ । ୧୪ । ଓଡ଼ିଶା ପ୍ରାପତି ତାକୁ ହୋଇବ ଏଥର । ଶୁଣି ଭାଇମାନଙ୍କର ଦେହ ଥର ହର । ୧୫ । ପୁରୁଅକୁ

ଅନେକ ପ୍ରକାରେ ଦେଲେ ଗାଳି । ମୁଷଳୀରେ ଅଜ ଚୋଟେ ଦେବା ବଣାବଳ । ଅମ୍ଭେ ଥାଉଁ ଥାଉଁ ଭୂ ରେ ହୋଇବୁ କ ଗୁଳା । ଭୁଲଭୁଣ୍ଠ ପୁଣ୍ୟ ଭୁଜ ଅମୃ ଅଗୁଁ ଯା ଯା । ୧୭ । ରକତ ଧେନ୍ନବୁଁ ଛିଡା ନେବୁ ଚୋର ପ୍ରାଣ । କଏ ସାହା ହେବ ଏହୁକ୍ଷଣି ହେବୁ ହାଣ । ୧୮ । ତା ସଙ୍ଗତେ କଲେ ଯୁଦ୍ଧ ଯେସନେ ବନ୍ଦର । ଯାହାଙ୍କୁ ଜଗତ ମଧ୍ୟେ ରଖିବେଟି ହର । ୧୯ । କେ ପୁଣି ମାରିବ ତାଙ୍କୁ ଅଛୁ କେ ଜଗତେ । ଅରତକାଳରେ ସାହା ହେଲେ ଜଗନ୍ନାଥେ । ୨୦ । ଧନ୍ୱଧର ମରାମର ହେଲେ ଭାଇ ଭାଇ । ଛଡ଼ିଣ ଯେ ପୁତ୍ରମାନେ ଗଲେକ ପଳାଇ । ୨୧ । ଅନ୍ତ୍ର ଭାଇମାନେ ଧେନଗଲେ ସଦନକୁ । ବାହୁଡ଼ି ଥଇଲେ ରାପ୍ୟ କରି ଦର୍ଶନକୁ । କଳହପ୍ରିୟ ଯେ ବଳହପ୍ରିୟ କରସ । ପୁରଅଙ୍କୁ ମାରିବା ଯେ ଶୁଅଇଣ ଟଷ । ୨୩ । ସମସ୍ତେ ମିଳଣ ଅପି ଶୁଅଇଲେ ବିଷ । ପୁରଅ ନ ମର ପୋଏ ହୋଇଲେ ବିନାଶ । ୨୪ । ଯାହାଙ୍କୁ ଭରସା ହର କିସ କାହିଁ ଉଦେ । କଥା ଘଟିଅଛୁ ରଘୁଅରଷିତ ପ୍ରାପ୍ୟେ । ୨୫ । ପୂତନା ଯେମନ୍ତ ସ୍ତନେ ଭରିଥିଲା ବିଷ । ସମୁଦ୍ର ମନ୍ଥନ ଭକ୍ଷିଥିଲେ ଯେ ମହେଶ । ୨୬ । ଅନେକ ଛନ୍ଦରେ ତାଙ୍କୁ ମାରି ନ ପାରିଲେ । ବ୍ରହ୍ମାଗ୍ରିକରତା ନାଥ ଯାଙ୍କୁ ସହା ଦେଲେ । ପୁଣି କେତେଦିନ ଅନ୍ତେ ସ୍ନାନକୁ ଯାନ୍ତି । ବୁଡ଼ାଇ ମାରିବାପାଇଁ କଢ଼ାଇ ନଥନ୍ତି । ୨୮ । ସଦାବେଳେ ପୁରଅ ଯେ ପ୍ରଭୁଙ୍କ ପ୍ରେମରେ । ସେ ସମସ୍ତ ଭାଇମାନେ ପଶିଲେ ଜଳରେ । ୨୯ । ପ୍ରରିଅଙ୍କୁ ବୁଡ଼ାଇ ମାରନ୍ତି ଯେତେବେଳେ । ଅନନ୍ତଙ୍କୁ ଯେ ମାଣ୍ଡ ବସିଥାନ୍ତି ଜଳେ । ୩୦ । ପୁରଅ ଯେ କୂଳରେ ରହନ୍ତୁ ଊଭା ହୋଇ ଲଜ୍ଜାଭରେ ପୁତ୍ରମାନେ ଗଲେ ଯେ ପଳାଇ । ୩୧ । ଏହୁପରି କପିଳ ରାଜାର ବଣ ନାଶ । ପ୍ରଭୁଙ୍କୁ ସେ ନନ୍ଦାନନ୍ଦ ପାଇଲେ ଯେ କ୍ଳେଶ । ୩୨ । ଯେଉଁ ହରି ଦ୍ରୌପଦୀଙ୍କ କୋଟିବସ୍ତ୍ର ଦେଲେ ।

ପୁରିଅଛୁ ଆଜ୍ଞାରେ ଓଡ଼ିଶା ରାଜା କଲେ । ୩୩ । ବଡ଼ସିଂହାସ ବେଶରେ ପାଇଲେକ ପୂଜା । ଚରଣେ ଖଟି ଅଛନ୍ତି ଓଡ଼ିଶା ପରଜା । ୩୪ । ଶ୍ରୀଗୁଣ୍ଡିଚା ଯାତ ଅଛି ଅନୁପ ଯେ ଦିନ । କହେ ପୁରୁଷୋତ୍ତମ ଦାସ ଧ୍ୟାନ ଧାନ ଜନ । ୩୫ ।

——:○:——

## ଚତୁର୍ଥ ଛାନ୍ଦ ।

ଏଥୁ ଅନ୍ତରୁ ଯେ ଶୁଣ କାଞ୍ଚୀଦେଶ ବାଣୀ । କଳବଳକେଶର ଯେ ତାହିଁ ନୃପମଣି । ୧ । ଏକଇ ଦୁହିଣୀ ତାର ନାମ ପଦ୍ମାବତୀ । ଚକ୍ଷ ଦେବାପାଇଁ କାହିଁ ନ ମିଳଇ ପତି । ୨ । ଅଚ୍ଛେ ଯୋଦ୍ଧା ଇଷ୍ଟ ତାର ଭଣ୍ଡାଗଣପତି । ଯାହା ମନ୍ତ୍ରୀ ପ୍ରେମଣ ସେ କରଇ ସ୍ତୁତି । ୩ । ଗଡ଼ ଘରପାଖେ ତାର ବେଢ଼ି ଅଛି ନଦୀ । ବୁଦ୍ଧିତା ଚତୁରାରେ ଦକ୍ଷ-ଇଣ ବଳ ବୁଦ୍ଧି । ୪ । ମନ୍ତ୍ରୀ ମୁଖକୁ ଚାହିଁଣ ପୁଛଇ ରାଜନ । ପଦ୍ମା-ବତୀ ବରଘର କର ହେ ସନ୍ଧାନ । ୫ । କେଉଁ ଦେଶୁ ବରଗୋଟି ବରଣ ଅଣିବା । ଉତ୍ତମ କୁଳ ଗୋତ୍ରରେ କନ୍ୟା କରାଇବା । ୬ । ଏଥିର କାରଣ ଫେଡ଼ କହ ମନ୍ତ୍ରିବର । ପଦ୍ମାବତୀ ପାଇଁ ବର ମିଳିବ ସୁନ୍ଦର । ୭ । ମନ୍ତ୍ରିବର କହଇ ଯେ ହେବେଦେବ ମଣିମା । ଉତ୍ତମ ବରେକ ଅଛି ବରଣ ଅଣିମା । ୮ । ଦକ୍ଷିଣଦେଶ ନୃପତି ତୁମ୍ଭେ ଅଟ ଯେଣୁ । ଓଡ଼ିଶା ନୃପତି ବର ଘଟିପାରେ ତେଣୁ । ୯ । ନୀଳାଚଳ କ୍ଷେତ୍ରବରେ ତାହାଙ୍କ ନିବାସ । ପ୍ରଭୁଙ୍କ ପ୍ରସାଦେ ଧନ ବଢ଼ଇ ବିଶେଷ । ୧୦ । ପୁରୁଷୋତ୍ତମ ରାଜ୍ୟ ବୋଲି ନାମ ଅଟଇ । ତାହାଙ୍କୁ ଦର୍ଶନ କଲେ ପାପ ଯେ ଛୁଟଇ । ୧୧ । ଜଗବନ୍ଧୁ ଦରଶନ ନିତି କରୁଥାନ୍ତି । ତାହାଙ୍କୁ ଘଟନା ପିନା ତୁମ୍ଭ ପଦ୍ମାବତୀ ।। ଶୁଣିଣ ହରଷ ହେଲେ କାଞ୍ଚୀଦେଶ ରାଜେ । ଏହିଠାରୁ ଦିଣଦିନ ପଥପେନା ହୁଏ । ସ୍ଥଳ ସୈନ୍ୟ ବଳଘେନ ଦେଖିଣ ଥିବା । ଅମ୍ଭର ମନ ମାନିଲେ ତାଙ୍କୁ କନ୍ୟା ଦେବା । ୧୪ । ଏତେ କହି ମହାରାଜା ହୋଇଲେ

ବାହାର । ସାଜିଛନ୍ତି ସୈନ୍ୟବଳ ସମୃଦ୍ଧ ଅପାର । ୧୫ । ହାତୀ
ଘୋଡ଼ା ଶବଦରେ କମ୍ପଇ ଧରଣୀ । ଓଡ଼ିଶା ଅଧିପ ସେ ଦକ୍ଷିଣ
ନରପତି ।୧୬। ଛନ୍ଦି ଚତୁରଙ୍ଗ ନିଶାଣ ଉଡ଼ାଇ ଚଳିଲ । ସୈନ୍ୟରେ
ପ୍ରବେଶ ହେଲେ କଳବଳେ ଭର । ୧୭ । ସେହ୍ନପଦ ଶ୍ରୀଗୁଣ୍ଡିଚା
ଯାତ୍ରା ହୋଇଅଛି । ନନ୍ଦିଘୋଷରେ ବିଜୟ ଦେବଙ୍କର ବସି ।୧୮।
ତାଳଧ୍ୱଜ ରଥେ ଚଢ଼ି ବଳଭଦ୍ର ଶ୍ରୀମଣ । ଦେବୀଙ୍କ ରଥେ ସୁଭଦ୍ରା
ବସିଛନ୍ତି ଜାଣ । ୧୯ । ଏ ତିନି ମଣ୍ଡଣି ହୋଇଛି ଶୋଭା ତିନିରଥ ।
ଚଳାପିଠିଅଏ ଲାଗିଛନ୍ତି ଅପ୍ରମିତ । ୨୦ । ପହଣ୍ଡି ବିଜୟବେଳେ
ଓଡ଼ିଶା ରାଜନ । ଚନ୍ଦନ ଛେରା ପକାଇ ଖରକନ୍ତି ପୁଣ । ୨୧ ।
ତେତିଶକୋଟି ଦେବତା କରନ୍ତି ଯେ ସ୍ତୁତି । ଏମନ୍ତ ଦେଖିଲେ
ଯହୁଁ ଦକ୍ଷିଣ ନୃପତି । ଗରବ କରଣ ମନେ ନିନ୍ଦା କଲେ ତାଙ୍କୁ । ପଦ୍ମା-
ବତୀକୁ ମୁଁ କଭୁ ନ ଦେବି ଏହାଙ୍କୁ । ଚଣ୍ଡାଳପଣରେ ଦେଖ ଖର-
କଇ ଦାଣ୍ଡ । ନୃପତି ହୋଇ କଳଣା ପଡ଼ୁଅଛି ମୁଣ୍ଡ । ଯାକୁ ଝିଅ ଦେଇ
ହେଲେ କୁଳ ଗୋତ୍ର ଯାଉ । ଦାରୁବ୍ରହ୍ମଙ୍କୁ ସେ ନିନ୍ଦା କରଣ
କହଇ । ୨୫ । ନିନ୍ଦା କରିଅଛି କୁରୁପତି ଯେ ହରିଙ୍କି । କତ୍ତ ଯୋଡ଼-
ଗଲେ ହେଲେ ସେ କେତେ ସରକ । ୨୬ । କଂସ ନିନ୍ଦାକଲେ ପୁଣି
ରାବଣ ନିନ୍ଦିଲେ । ସୁବର୍ଣ୍ଣ ଲଙ୍କାପୁରକୁ ଭୋଗ ସେ ନ କଲେ । ୨୭ ।
ସେହିପରି ନିନ୍ଦାକରି ଚଳିଲେ ନରେଶ । ପ୍ରବେଶ ହୋଇଲେ ସେ
ଦକ୍ଷିଣ କାଞ୍ଚିଦେଶ ।୨୮। ଏଣେ ଭଗବାନ କହିଲେ ନୃପତିର ଅଗେ ।
ହରି ନିନ୍ଦିଲେ ଦକ୍ଷିଣ ରାଜା ବଇରାଗେ । ୨୯ । ଶୁଣି ଓଡ଼ିଶା ନୃପତି
ହେଲେ କୋପାନଳ । ଏଡ଼େବଡ଼ ସଜା ହେଲା ବୋଇଲେ ଚଣ୍ଡାଳ ।
ମନଦୁଃଖେ ରହିଲେ ଯେ ସେଦିନ ରାତ୍ରରେ । ଏକଲଯୁ ଭକ୍ଷିଥାନ୍ତି
ପ୍ରଭୁଙ୍କ ପାଦରେ । ୩୧ । ନିଶାମଣି ଉଷାକୁ ପ୍ରାପତ ହେଲା ଅସି ।
ଭଜେ ପୁରୁଷୋତ୍ତମ ଦାସ ନୀଳଗିରି ବାସୀ । ୩୨ ।

———o———

## ପଞ୍ଚମ ଛାନ୍ଦ ।

ଏଥୁ ଅନନ୍ତରେ ଚହିଁ ଛେଡେବନ ଗଣ୍ଡ । ମହାସୂଆର ଦଅଇ
ପ୍ରଭୁଙ୍କୁ କମଳା । ୧ । ପ୍ରଭୁଙ୍କ ପାଖେ ରଖନ୍ତେ ମୁଣ୍ଡ ହଲାଇଲେ ।
ବଡ଼ଭାଇ ଚାଖେ ଦଅ ଶ୍ରୀମୁଖେ ବୋଇଲେ । ୨ । ବଡ଼ ଠାକୁରଙ୍କୁ
ନେଇ ଦଅନ୍ତେ ସୂଆର । ନାହିଁ ନାହିଁ ବୋଲନ୍ତି ଯେ ପ୍ରଭୁ ଜଳାମ୍ବର ।
କଳାଶ୍ରୀମୁଖ ପାଖରେ ସମର୍ପଣ କର । ଏ କଥା ଉଚିତ ଅଟେ
ଦଅ ହେ ସତ୍ୱର । ୪ । ମହାସୂଆର ଯେ ଏହି ପ୍ରାପ୍ତ ରଖୁଥାନ୍ତି ।
ପ୍ରଭୁଙ୍କ ନିମନ୍ତେ ମନେ କରି ଭୟ ଭ୍ରାନ୍ତି । ୫ । ଏହି କାଳେ ଦର୍ପଣକୁ
ଅସନ୍ତି ନୃପତି । ସଙ୍ଗେ ସଙ୍ଗେ ଅଛନ୍ତି ସବୁ ପାଞ୍ଚ ମନ୍ତ୍ରୀ । ୬ ।
ଗରୁଡ଼ ପଛରେ ଯାଇଁ ହୋଇଲେକ ଜଗା । ଧଳା କଳା ବେନି
ରୂପ ଦିଶୁଛନ୍ତି ଶୋଭା । ୭ । ଦେଖିଲେ ମହାସୂଆର ହସ୍ତରେ
କମଳା । ଏପାଖ ସେପାଖ ଚଖେ ହୋଇଣ ବାଉଳା । ୮ ।
ପ୍ରଭୁଙ୍କୁ ନ ଦେଇ ଭୋଗ କରେ ଖଣ୍ଡା ଭଣ୍ଡି । ଏମନ୍ତେ ଦାସ
ସୂଆର ସହଜେ ଅଜାଣ୍ଡି । ୯ । ପାଞ୍ଚ ମନ୍ତ୍ରୀଙ୍କ ହସ୍ତରେ ଅଟେଲେ
ଧସ୍ତଇ । ଦ୍ୱୈରପ୍ରାପ୍ତ ନେଉଛନ୍ତି ବନ୍ଧନ କରାଇ । ୧୦ ।
ଦାସ ସୂଆରକୁ ନେଇ ବନ୍ଧନେ ରଖିଲେ । ପ୍ରଭୁଙ୍କ ନିମନ୍ତେ
କେତେ ଦଣ୍ଡ ଶାସ୍ତି ଦେଲେ । ୧୧ । ଦେଖ ଦଇବ ଘଟଣା
ଭଲକୁ ଯେ ମନ୍ଦ । ଅକଳଙ୍କରେ କଳଙ୍କ ଲଗିଅଛି ହିନ୍ଦ । ୧୨ ।
ଏହାପରେ ପ୍ରଭୁଦନ କାଳ ଗଲା ବହି । ରଜନୀ ଅର୍ଦ୍ଧ ଭାଗରେ
ପ୍ରଭୁ ଭାବଗ୍ରାହୀ । ୧୩ । ରାଜାର ଶୟନ ପାଶେ ହୋଇଲେ
ପ୍ରବେଶ । ସ୍ୱପନମାର୍ଗେ କହନ୍ତି ଶୁଣ ହେ ନରେଶ । ୧୪ ।
ମୋର ସୂଆର ଅପ୍ରାଧ କିଛି କରିନାହିଁ । ଅକାରଣେ ଦଣ୍ଡ ଦେଉ-
ଅଛକାହିଁ ପାଇଁ । ୧୫ । କମଳା ଦଅନ୍ତେ ମୋତେ ମୁହିଁ
ନାସ୍ତି କଲି । ବଡ଼ଭାଇଙ୍କି ଦଅନ୍ତେ ସେଯେ ଭୁଞ୍ଜି ବୋଲି । ୧୬ ।
କାହା ଅଜ୍ଞା ସେ ପାଳିବ ଚେଣୁ ଥାଏ ଧରୁ । ଏଥି ପାଇଁ ଦଣ୍ଡ ତାକୁ

ଦିଅ ବଣ୍ଣୀଥାଉ ।୧୭। ଛନ୍ଦଦିନ ହେଲା ମୋର ନ ଥାଉ
ମଣୋହି । ପୁଅର ନମନ୍ତେ ଅଭବଙ୍କେ ଅଛୁ ରହି । ୧୮ । ଏବେ
ବନ୍ଧନକୁ ଫେଡ଼ ମୋର ପୁଅରକୁ । ପ୍ରବୋଧ କରଣ ଷଡ୍ଡ ଅପିରୁ
ଆହାକୁ । ୧୯ । ଚୋହର ଯେ ମନଦୁଃଖ ନଷ୍ଟପୁ ଖଣ୍ଡିବ । ଯୁଦ୍ଧ
କରି କ ହ୍ନଦେଶ ନୃପଛ ଜିଣିବ । ୨୦ । ଗନବ କରଣ ସେ ଯେ
ବାହୁଡ଼ଣ ଘଲ୍ଲ । ହିଅକୁ ବଲ୍ଲ ନ ଦେଉ ଗୁଣ୍ଡାଲ ବୋଇଲା । ୨୧।
ଟାଣପଣ ଚଷ୍ଟପୁ ମୁ ସାଉବ ତାହାର । ଛନ୍ନଦନ ଛନମାସ ଛନ
ବଉଷଭ । ୨୨ । ଏକଥା ପ୍ରମାଣ ଅଟେ ସତ୍ୟ ସତ୍ୟ ମୋର ।
ଏତେ କହି ଅନ୍ତର୍ଦ୍ଧାନ ହେଲେ ଚକ୍ରଧର । ୨୩ । ଉଜଣୀ ପ୍ରହରେ
ଥାଉଁ ଜାଗିଣ ନୃପତି । ପ୍ରଭୁଙ୍କ କଥାକୁ ସେ ଯେ ମନେ ମନେ
ରେଚି । ୨୪ । ଦାସ ପୁଅରକୁ ବନ୍ଧନକୁ ଫେଡ଼ ଅଣି । ଅନେକ
ପ୍ରବୋଧ କର କହେ ମୃଦୁବାଣୀ । ୨୫ । ସ୍ନାହାନ ସନ୍ଧ୍ୟ ସାର
ପ୍ରଭୁପାଖେ ଗଲେ । ମହାରାଜା ମନ ପୂରେ ଦର୍ଶନ ଯେ କଲେ ।
ପାଦାଳ୍ପ ଘଣ୍ଟ ବାଜଇ ଶୁଭେ ଘନ ଘନ । ଦାସ ପୁଅର ଖଟିଲା ପ୍ରଭୁ
ସନ୍ନିଧାନ । ୨୭ । ବକ୍ଷର ଭୋଗକୁ ବଡ଼ସିଂହାର ବେଳରେ ।
ଜଗବନ୍ଧୁ ଦନ ମାଗୁଛା ନଳର ପାଶରେ । ୨୮ । ସେହିଠାରେ
ଅହଙ୍କାର ସେ ଭୋଗ ଖାଇଲା । ଦାସ ପୁଅର ଯେ ତାହା ନୟନେ
ଦେଖିଲା । ୨୯ । ବୋଲଇ ଭେଜନନ୍ତେ ଭୋଗ ପ୍ରଭୁଙ୍କୁ ମୁଁ ଦେବ ।
ଜଣ୍ଟଯେ ଅପ୍ରାଧ ହେବ ଦୋଷକୁ ଲଭିବ । ୩୦ । ନ ଦେଲେ
ପ୍ରଭୁଙ୍କୁ ଆନ୍ନ କୋହିବ ଯୋଗାଡ଼ । ଏମନ୍ତ କହୁର କର ଚଞ୍ଚ
କଲା ଦୃଢ଼ । ୩୧ । ଶ୍ରୀ ଜଗନ୍ନାଥଙ୍କୁ ନଇବେଦ୍ୟ ବେଗେ କର ।
ଘପେତେ ଦେଖିଲା ତାହା ବଚ୍ଛି ନ ବସୁର । ୩୨ । ଅଳି କ ଶୁକ୍ଳ
ନବମୀ ଅଟଇ ସେ ଦନ । ଧନ୍ଦ ଧୂପ ପାଞ୍ଚ ଅବକାଶ ବଢ଼ାଇଣ ।
ଘନ ହରଷେ ସଦନେ ପଡ୍ଡିଲା ଯାଇଁ । ଶ୍ରୀ ବାସୁଦେବ ଚରଣେ
ଚିତ୍ତ ମନ ଦେଇ । ୩୪ । ଚତୁର୍ଦ୍ଦାସ୍ୟ ସେଷ ଅସି ହୋଇବାକୁ

ହେଲା । ତୁମ୍ଭହିଁ ଜାଣିଲେ ଦାସ ପୁଅର ଯା ଦଶା । ୩୫ । ତେଣେ
ରଜନୀ ଅର୍ଦ୍ଧେ ପୁଅର ନିକଟ । ଦାସ ପୁଅରକୁ କହୁଛନ୍ତି ନନ୍ଦ-
ସୁତ । ୩୬ । ତାହିଁ ପାଇଁ ମନରେ ତୁ ଭାବନା କରୁଛୁ । ସେ ପାଣି
ପ୍ରାପ୍ତ ହେବ ଅମ୍ଭେ ଯେବେ ଅଛୁଁ । ୩୭ । ଏଥିକୁ ମନରୁ ଚିନ୍ତା
ଫେଡ଼ ଅହେ ଦାସ । ଅମ୍ଭ ଅଜ୍ଞାରେ କ ଅଛ ରହୁପାରେ ତେବେ ।
ମୁଁ ଯାହା କହୁଛି ଶୁଣ ରଜନୀ ଗାହିବ । କାଞ୍ଚିଦେଶ ଯିବୁଁ ଅମ୍ଭେ
ରାଜାଙ୍କୁ କହିବ । ୩୮ । କାଞ୍ଚି ନୃପତିର ସଙ୍ଗେ ଯୁଦ୍ଧ କରିବଇଁ ।
ତାହା ତୁହି ତାଙ୍କୁ ଅଣେ କହ ମୁଁ ଦେବଇଁ । ୪୦ । ତୁରଙ୍ଗ ଅମ୍ଭେ
ଯେ ଯାଉଛୁଁ ଅଗବର । ଯାହା ଘଟିଅଛି ଅଜି ରଜନୀର ଶେଷର ।
ସଜିତ ରୂପରେ ଅମ୍ଭେ ବାରୁ ପରେ ବସି । ଏହିକ୍ଷଣି ଯିବା କରେ
କରଷ ଯେ ଅଛୁ ।୪୨। ଯାମା ଜୋଡ଼ା ହୋଇ ଧରି ସିପାହୀର ବେଶ ।
କଷ୍ଟେ ନାହିଁଖାଇ କରିବଇଁ କାଞ୍ଚିଦେଶ । ୪୩ । ସୁଜାଙ୍କୁ କହିବୁ
କାଞ୍ଚି ଅମ୍ଭ ପଛେ ଯିବେ । ଦାସ ପୁଅରକୁ କହି ଗଲେ ବାସୁଦେବେ ।
ଉଠାଇଲେ ବାରୁ ରକ୍ଷପାଳକୁ ତତକ୍ଷଣେ । କାଳିକ ପାଇକ ବୋଲି
ନାମ ତୁରଙ୍ଗଣେ । ୪୫ । ତାହାକୁ ବୋଲନ୍ତି ହରି ଶୁଣ ହୋ
କାଳିକ । ପୂରୁଣା ଟାଙ୍ଗଣ ବାଛି ଅଣ ଯେ ଯେତେକ । ୪୬ ।
ତୁରଙ୍ଗ ଘୋଟକ ବାରୁ ଅଟେ ତେତେନାକ । ନାଲ ଲୋହିତ
ପାଣ୍ଡୁର ଧଳା କଳା ଛନ୍ତି । ୪୭ । ସଦନକାରୁକୁ ଶୀଘ୍ର ନିକଟକୁ
ଅଣ । ଯତନେ ଖଞ୍ଜିବ ଅଷ୍ଟାଦଶ ଅଭରଣ । ୪୮ । ଉତ୍ତର
ଅନ୍ତର ସେନ୍ଧୁ ତୁରଙ୍ଗଣ ଦୁହିଁ । ପ୍ରଥମ ବାଲୁଶାଳରେ ପରବେଶ
ଯାଇ । ୪୯ । ପ୍ରଥମ ଦ୍ୱିତୀୟ ଯେ ତୃତୀୟ ଚତୁର୍ଥରେ । ପଞ୍ଚମ
ଷଷ୍ଠ ସପ୍ତମ ଅଷ୍ଟମ ଖଦାରେ । ୫୦ । ନବମ ଦଶମ ଏକାଦଶ
ଖଦା ଛାଡ଼ି । ଦ୍ୱାଦଶ ତ୍ରୟୋଦଶରୁ ଅଣିଲେ ବାଛିଣି । ୫୧ । ଧଳା
କଳା ତୁରଙ୍ଗବର୍ଣ୍ଣ ମେଘା ଯୋଦ୍ଧାବାରୁ । ଅଷ୍ଟାଦଶ ଭୂଷଣ କରିଲେ
ଅଙ୍ଗ ନୋହେ ଗରୁ । ୫୨ । ସଜ ହେଲେ ତାହାର ଲଗାମକୁ

ଧର । ଶିରରେ ଶୃଙ୍ଗ ବସ୍ତ୍ରକେ ଶୃଙ୍ଗପାଶେ କର । ୫୩ । ଗ୍ରୀବ ମାଳା ମୋତି ଯେ ମାଣିକ୍ୟ ଚଉପେଣ୍ଟ । ପାଦରେ ଖଞ୍ଜିଲେ ତାର ବାଜେଣୀର ଗୋଠ । ୫୪ । ପାଦର ନହ୍ଲାକ୍ ଯେସନେ ଦପେ ଦାନ୍ତ ଦାଉ । ଏମନ୍ତ ବାହୁକୁ ନିହୁଡ଼ବକେ ଶୋଭା କେତୁ । ୫୫ । ଧଳା ଘୋଡ଼ା ପରେ ବସେ ହେଲେ ଜଗନ୍ନାଥ । କଳା ଘୋଡ଼ା ପରେ ବସିଛନ୍ତି ହଳଧର । ୫୬ । ଯୋଗ ଲଗ୍ନ ଧରିଣ ଯେ ହୋଇଲେ ବାହାର । ଶୂନ୍ୟରେ ଉଡ଼ନ୍ତି ବାରୁ ଯେସନେ ପକ୍ଷିବର । ଦୁଇଭାଇ ସାଉନ୍ତ ରୂପରେ ଗଲେ କ୍ଷଣି । ତତ୍କ୍ଷଣେ ଗଗନେ ଅସ୍ତ ହେଲେ ଦିନମଣି । ୫୮ । ଦାସ ପୁଅର ଉଠିଣ ରାଜାଙ୍କୁ କହିଲେ । ଯୋଗ ଲଗ୍ନ ଘେନ ପ୍ରଭୁ କାଞ୍ଚିଦେଶ ଗଲେ । ୫୯ । ଧଳା ଘୋଡ଼ା କଳା ଘୋଡ଼ା ଚଢ଼ାଉତ କର । ସାଉନ୍ତ ସିପାହୀ ବେଶେ ଗଲେ ନରବର । ୬୦ । ତୁମ୍ଭେ ସଇନ ସକଳ ଘେନି ବେଗେ ଯାଅ । ଉଛୁର ନ କର ଦଣ୍ଡେ ଏଠାରେ ନ ରହ । ୬୧ । କାର୍ଯ୍ୟ ସିଦ୍ଧ କରିବେ ଯେ ପ୍ରଭୁ ଜଗନ୍ନାଥ । କହେ ପୁରୁଷୋତ୍ତମ ଦାସ ହେଲି ମୁଁ ଅନାଥ । ୬୨ ।

——:o:——

ଷଷ୍ଠ ଛାନ୍ଦ ।

ଏଥୁ ଅନନ୍ତରେ ଶୁଣ ଦିବ୍ୟରସ ଗୀତି । ଖଡ଼ିକାଲକୁ ଡକାଇ ଓଡ଼ିଶା ନୃପତି । ୧ । ଅହେ ଖଡ଼ିକାର ତୁମ୍ଭେ ଯୋଗ ଲଗ୍ନ ଧର । ଦକ୍ଷିଣ ଦେଶକୁ ଯାତ୍ରା ବିଧିମତେ କର । ୨ । ଶୁଭଯୋଗ ଘେନଗଲେ କାର୍ଯ୍ୟ ହେବ ଶୁଭ । ପ୍ରସନ୍ନେ ଘଟିବ ମାତ୍ର ଏମନ୍ତ ଦୁର୍ଲଭ । ୩ । ଶୁଣି ଖଡ଼ିକାର ତହୁଁ ଯୋଗ ଲଗ୍ନ ଧର । ଦକ୍ଷିଣକୁ ଯୋଗ ନ ସହଇ ଦଣ୍ଡଧାର । ୪ । ଶିବାଗଉରୀ ମତରେ ପ୍ରସନ୍ନ ଘଟିଲା । ଯେବେ ଦୋଷାଦୋଷ ଥିଲା ଭୂମିର ଭୁଟିଲା । ୫ । ଶୁଣି ସୈନ୍ୟବଳମାନେ ହୋଇଲେକ ସଜ । ହସ୍ତୀପରେ ସବାର ଯେ

ହେଲେ ନୃପରାଜ । ୬ । ଯେଉଁଣେ ପ୍ରଭୁ ଜଗନ୍ନାଥ ଗୁପତ ରୂପରେ ।
ସମୁଦ୍ର ମୁହାଣ ପଥେ ଯାଉଛନ୍ତି ଧୀରେ । ୭ । ନଦୀର ନିକଟେ ଏକ
ଗ୍ରାମ ଗୋଟି ଅଛି । ଆଦଗ୍ରାମ ବୋଲି ତାର ନାମ ଗୋଟି ଲେଖି ।୮।
ଗୋପାଳ ବସ୍ତି ସେ ଅଟେ ପାଞ୍ଚ ସାତ ଘର । ବୃଷଭ ବେହେଷ୍ଣ
ବୋଲି ଏକଇ ଗୋପାଳ । ୯ । ମାଣିକୀ ବୋଲିଣ ତାର ଏକଇ
ଦୁହିତା । ଚନ୍ଦ୍ରବେହେଷ୍ଣ ବୋଲିଣ ଅଟେ ତାର ଭର୍ତ୍ତା ॥ ସେହି ଗ୍ରାମେ
ଘର ସେହି ଗ୍ରାମେ ଶାଶୁଘର । ବାଲ୍ୟତ କାଳରୁ ଜ୍ଞାନ ହୋଇଛି
ତାହାର ॥ ରୂପ ଗୁଣେ ସରି ସମ ନାହିଁ ତ୍ରିଭୁବନେ । ସୁଧୀର ରମ୍ଭା
ଅପସର ପଡ଼ିଲେ ଜ୍ଞାନେ ॥ ଦଧି ଅଧାମ ଯେ ସର ଲବଣୀ ଘେନିଣ ।
ସଙ୍ଗ ଗୋପାଳୁଣୀ ଅସି ଚଳନ୍ତି ପଥେଣ । ୧୩ । କାଞ୍ଚି ଦେଶକୁ ଯେ
ପଥ ସେହି ଗ୍ରାମେ ବାଟ । ବାଲିରେ ପସରା ଘେନି ବସିଥାନ୍ତି ଆଟ ॥
ସେହି ଦିନ ମାଣିକୀ ଯେ ଅଟେ ଖରତରେ । ପସରା ଘେନିଣ ମୁଣ୍ଡେ
ଦେଖିଲା ପଥରେ । ୧୫ । କାକ ଆଧାର ବାଣ୍ଟଇ ବାମରେ ଶୃଗାଳ ।
ପାଦରେ ଘେନିଣ ମାଛ ଉଡ଼େ ଶଂଖଚିଲ । ୧୬ । ନକୁଳ ଯେ
ବଣେ ବଣେ ଯାଉଅଛି ଗଳି । ଏହି ପ୍ରାୟେ କେତେଦିନ ନ ଦେଖଇ
ଆଳୀ । ୧୭ । ବାମ ନେତ୍ର ଷ୍ଫୁରେ ବାମ ଜାନୁ ପୁଲକିତ । ମାଣିକ
ବକ୍ଷରେ ଚଢ଼େ ଏ ବଡ଼ ବିଚିତ୍ର । ୧୮ । ଏମନ୍ତ ଦିନେକ ମୋତେ
ଯୋଗ ଦେଖା ନୋହେ । ମନର ହରଷ କଥା ମନେ ମନେ କହେ ॥
ବାଲି ପଥରେ ପସରା ରଖିଲାକ ଯାଇଁ । ତହିଁ ତଳେ ପଡ଼ିଅଛି
ବଟ ବୃକ୍ଷ ଛାଇ । ୨୦ । ମନ ହରଷରେ ବସିଅଛି ଯେ ମାଣିକୀ ।
ପଥିକମାନଙ୍କୁ ଚାହେଁ ଏଣିକି ତେଣିକି । ୨୧ । ଦେଖିଲା ନୟନ
ଆଗେ ଦୁଇଗୋଟି ଘୋଡ଼ା । ଦୁଇ ସିପାହୀ ବସନ୍ତି ହୋଇ ଜାମା
ଯୋଡ଼ା । ୨୨ । ଧଳା କଳା ଦୁଇରୂପ ଦିଶଇ ସୁନ୍ଦର । ପଦ୍ମପତ୍ର
ଯେହ୍ନେ ଘର ହୋଏ ଝଳଝଳ ।୨୩। ଚନ୍ଦ୍ରମା ପ୍ରାୟେ ବଦନ ଦିଶଇ
କାନ୍ତି । ଏମନ୍ତ ଦେଖିଲା ନାହିଁ ଅପୂର୍ବ ମୂରତି ॥ ଚରଣ ହରଣୁ

ସାଙ୍ଗେ ଅବର ଚୋରଡ଼ା । ଦୁର୍ଦ୍ଦାନ୍ତ ଦୁର୍ଦ୍ଧର୍ଷ ଚଣ୍ଡା ଚନ୍ଦମ୍ବାଦଉଡ଼ା
ମୋଠାରୁ ଖାଇବେ ଦହି ସବେ ଲାଗି ବେଳ । ଏମନ୍ତ ସୁନ୍ଦର
ମୁଁ ନ ଦେଖଇ ଅବନୀ ।୨୬। ଘୋଡ଼ାରୂପ ଗୋଟି ଦେଖି ନ ଚଳଇ
ପାଦ । ଅଷ୍ଟରତ୍ନେ ଅଭରଣ ମୁଣ୍ଡେ ଖୋଦେ ଚନ୍ଦ । ୨୭ ।
ସାଲୁ ବନାଉତ ପଟ୍ଟ ହୁଡ଼ଇ ପୃଷ୍ଠରେ । ଶ୍ରାମ୍ବକଣି ସୁନାଚେଲ
ଲଗିଛି ଲଙ୍କରେ । ୨୮ । ଗଳାରେ ବାଜଇ ଘଣ୍ଟି ଦୂରରୁ ଶବଦ ।
ଉତ୍କ୍ଷିପ୍ତ ହୁଅଇ ଯେ ମାଣିକର ହୃଦ । ୨୯ । ନିକଟ ପାଖରେ
ଅଣି ଭେଟିଗଲେ ସେହ । ଦେଖିଲେ ଦିବ୍ୟ ସୁନ୍ଦରୀ ଏକ ବସିଥାଇ ॥
ଦଧି ଅଧାମ ପସରା ରଖିଛି ଆଗରେ । ପଥିକ ଯେ ଖାଇ ଯାଉଛନ୍ତି
କ୍ଷୁଧାଭରେ । ୩୧ । ପଚାରନ୍ତି ଜଗନ୍ନାଥ ଘୋଡ଼ା ପାଶେ ଥାଇ ।
କାହିଁ ଦେଖଇ ଗୋ ବାଟ ଏହିତ ଅଟଇ । ୩୨ । ପଥ ନ ଜାଣୁ
ଯେ ଅମ୍ଭେ ଯାଉଅଛୁଁ ମାଡ଼ି । ବାଲି ବାଟରେ ଯେ ଘୋଡ଼ା ନ ପାରେ
ଚଉଡ଼ି । ୩୩ । ଶ୍ରମରେ ଦେହ ଆମ୍ଭର ଯାଉଅଛି ବାଧି । ଖଟା କି
ମିଠା ଅଛଇ ପସରାର ଦଧି । ୩୪ । କେଉଁ ଗ୍ରାମେ ଘର ତୋର
କାହାର ବନିତା । କି ନାମ ଅଟଇ ତୋର କେ ତୋହର
ଭର୍ତ୍ତା । ୩୫ । ତୋ ପରି ଯୁବତୀ ଆମ୍ଭେ ଦେଖିନାହୁଁ କାହିଁ ।
ତୋତେ ଦେଖି ଯାଉଥିଲୁଁ ପଥେ ଗଲୁଁ ରହି । ୩୬ । ବଚନ
କି କହୁ ମୃଦୁଣେ ବସନ ଘୋଡ଼ାଉ । ତୁମ୍ଭର ଜୀବକା ପେଶା
ଅଟଇ ଗୋ ଏହୁ । ୩୭ । ଶୁଣିଣ ମାଣିକୀ କାମେ ହେଲା ଜର
ଜର । ବୋଇଲା ମୋତେ ପୁଚ୍ଛିଲ ମୋର ଘର ବର । ୩୮ ।
ପିତା ବୃଷଭ ବେହେରା ମୋ ନାମ ମାଣିକୀ । ଉନ୍ନ ବେହେରା ମୋ
ପତି ଏବା ଗ୍ରାମଟିକି । ୩୯ । ଦହି ଦୁଧ ବେପାର କରଇ ଯାଏ
ଦିନ । ଘୋରୁ ମହିଷ ଅମ୍ଭର ବହୁତ ବନ୍ଧନ ।୪୦। ଦହି ଖାଇବାକୁ
ଶ୍ରଦ୍ଧା ହେଉଛିକି ମନ । ପଶ୍ଚାତ ମୋ ପତି ନାହିଁ କହୁଅଛି ଜାଣ ॥
ମୋତେ ପଚାରିଲ ତୁମ୍ଭେ ଘରବର କଥା । କେଉଁ ରାଜ୍ୟ ଘର

ତୁମ୍ଭ କେଉଁଣ ବ୍ୟବସା । ୪୨ । ପିତା ମାତା ନାମ ତୁମ୍ଭର ଅଟଇ
କସ । ଅନୁବ୍ରତେ ଘୋଡ଼ା ଚଢ଼ି ସିପାହିର ବେଶ । ୪୩ । ଏମନ୍ତ
ସୁନ୍ଦର ରୂପ ଦେଖିଲାତ ନାହିଁ । ବାରୁରୁ ଓହ୍ଲାଇ ଶ୍ରମ ସାର ଏହି-
ଠାଇଁ । ୪୪ । ଶୁଣିଣ ହରଷ ହେଲେ ସେ ଦୁଇ ରାଉତ ।
ବୋଇଲେ ଶୁଣ ମାଣିକ ଅମ୍ଭର ଉକତ । ୪୫ । ଅମ୍ଭ ଦୁଇଜଣ
ଙ୍କର ଘର ଗୋଟି ଯହିଁ । ମଥୁରା ବୋଲିଣ ଏକ ଗ୍ରାମେକ ଅଛଇ ॥
ବସୁଦେବ ବୋଲି ପିତା ଅଟଇ ଅମ୍ଭର । ଦେବକୀ ଅମ୍ଭର ମାତା
ଅଟେ ଗର୍ଭଧାରୀ । ୪୭ । ଏ ପୁଣ ଅମ୍ଭର ବଡ଼ ଭାଇ ଯେ ଅଟନ୍ତି ।
କାମପାଳ ବୋଲି ନାମ ଧରିଣ ଡାକନ୍ତି । ୪୮ । ଅମ୍ଭ ନାମ
ଜଗବନ୍ଧୁ ତୋ ଆଗେ କହିଲୁଁ । କଂସ ଭୟେ ନନ୍ଦଘର ଗୋପ
ପୁରେ ଗଲୁଁ ।୪୯। ଗୋପାଳ ଘରରେ ଅମ୍ଭେ ଜଗିଲୁ ଯେ ଗାଈ ।
ବଣି ବସିଅଛୁ ଦେଖ ଗାଈ ଦୁହିଁ ଦୁହିଁ । ୫୦ । ତୁମ୍ଭର ପ୍ରାୟୁ
ପସରା ବୁଲାଇ ବିକନ୍ତି । ନବଲକ୍ଷ ଗଉଡ଼ଘର ସେଠାରେ ଅଛନ୍ତି ॥
ସବୁଘରେ ଛେନା ଘିଅ ଦହି ଦୁଧସର । ପାଣି ନ ମିଶିଲେ କାହିଁ
ହୁଅଇ ବେପାର । ୫୨ । କଲା ରାଉତ ବଚନ ମାଣିକୀ ଶୁଣିଲା ।
ମୁଖରେ ବସନ ଦେଇ ଅଳପ ହସିଲା ।୫୩। ଅନଙ୍ଗ ବାଣେ ତା ତନୁ
ହେଲା ଘାର ଘାର । ଦରିଦ୍ରକୁ କୋଟି ନିଧି ପରାପତ ପର । ୫୪ ।
ରାଉତଙ୍କୁ ବଚନ ଯେ କହଇ ମାଣିକୀ । ସ୍ୱାମୀଙ୍କର ଏହିଠାରେ ପୁରଷ
ପାଣିକ । ୫୫ । ଅଳପ ନିକଟ ଦୂର ବାଲିମଯ୍ୟ ପଥ । ଘୋଡ଼ାରୁ
ଓହ୍ଲାଅ ତୁମ୍ଭେ ହେ ଦୁଇ ରାଉତ । ୫୬ । ମୋହଠାରୁ ଦହି ଖାଇ
ସୁସ୍ଥ ହୋଇ ଯାଅ । ଯଦି ଅଚରଣ କର ଯଦି ଘର ପୁଅ । ୫୭ ।
ମାଣିକୀ ବଚନ ଶୁଣି ବୋଲନ୍ତି ରାଉତ । ସ୍ନାହାନ କରନ୍ତୁ ଅମ୍ଭେ
ହୋଇ ଶୁଚିମନ୍ତ । ୫୮ । ଅସ୍ନାନଅ ହୋଇ ଏତେବେଳ ଯାଏ
ନାହିଁ । ନସ୍ପୃନ ନାହିଁକି ତୁ ଗୋ କେଉଁ ପରକନ୍ଥ । ୫୯ । ମାଣିକୀ
ବୋଲଇ ତେବେ ଖାଅ ଏବେ ଦହି । ଭଲ ଦହି କରିଅଛୁ ଦେଇ

ସଜ ମଉ । ୬୦ । ଖାଇଲେ ହଇବ ବାତ ପିତ୍ତ ସ୍ଲେଶମାନ । ନବତ ପିଅ ଯେ ହେବ ବଳେ ବଳବାନ । ୬୧ । ଜଗନ୍ନାଥ ବୋଲୁଛନ୍ତି ମାଣିକ ହେ ସତ । କଉଡ଼ୀ ନାହିଁ ଯେ ଦହିଁ ଖାଇବୁ କେମନ୍ତ । ୬୨ । ଅପଢ଼ା ଅଗ୍ରଜ୍ୟ ଭୂମି ନୁହଇ ଯେ ଘର । ଭାଙ୍ଗ ବାପି ଦେବୁ ତ ନ ଦେବୁ ସ୍ୱଭାବର । ୬୩ । ମାଣିକ ବୋଇଲା ହେଉ ନ ଦେବ କଉଡ଼ୀ । ଦହି ଖାଇଥିଲେ ମନ ହେବ ଘଡ଼ି । ଶୁକସନକାଦ ଯାକୁ ନ ପାବନ୍ତି ଧ୍ୟାନେ । ଦହି ଖାଉଛନ୍ତି ସେ ମାଣିକୀ ସନ୍ନିଧାନେ । ୬୫ । ଘୋଡ଼ାପରେ ବସି ଦହି ଖାଇଲେ ହରଷେ । ମାଣିକୀ ଯେ ଲେଜେ ଛୁଡ଼ା ହୋଇଥାଇ ପାଶେ । ୬୬ । ଦହି ଖାଇ ଦୁଇଭାଇ ହରଷିତ ହେଲେ । ଆଅଗୋ ମାଣିକୀ ବୋଲି ବଚନ ବୋଇଲେ । ୬୭ । କେଉଁଠାଣି ଅଇଲେ ଯେ ଦେବା ତୋ ପଇସା । ବହୁତ ଦନରେ ଏବେ ପୂର୍ଣ୍ଣିବଲୁ ଅଶା । ୬୮ । ତୁମ୍ଭେ ବହୁତ ଗୋପାଳ ଏଠାରେ ରହିବ । ମାଣିକୀ ପାଟଣା ବୋଲି ନାମ ଯେ ଭଣିବ । ୬୯ । ଗାଳି ନ ଦେବ ଗୋ ମନେ କରୁଥିବ ନିତ୍ୟ । ଘଡ଼ି ନଗର ତୋ ନାମ ଅଟେ ଉପବନ୍ତ । ୭୦ । ମାଣିକୀ ବୋଇଲା ସତ କହୁଅଛ ତୁମ୍ଭେ । କଉଡ଼ୀ ନ ନେଲେ ମୋତେ ଘରେ ଗାଳି ଦେବେ । ୭୧ । ନ ଦେଲେ ପଇସା ମୁହିଁ ଛାଡ଼ି ଦେବ ନାହିଁ । ନୋହିଲେ ତୁମ୍ଭ ସଙ୍ଗତେ ଚାଲି ହୋଇ ଯିବଇଁ । ୭୨ । କହୁଁ କହୁଁ ମାଣିକୀର ମନ ଯେ ଟିଛାଟି । ସଉତ ଦୁଇଭାଇଙ୍କ ଜଗାଳଇ ବାଟ । ୭୩ । ତୁମ୍ଭଙ୍କୁ ଛାଡ଼ିଲେ ମୋର ପ୍ରାଣ ନ ରହିବ । ଦେଖି ଦେଖି ଜଞ୍ଜାଳ କରୁଛୁ କାମଦେବ । ୭୪ । କାଳିଆ ସଉତ ଶୁଣି ବୋଲଇ ଉତ୍ତର । ଏ କଥା କୋହେ ଗୋ ଯନ୍ତ୍ର ଉଚିତ ବେଭାର । ତେ ହଜ କାରେ ମିନା ଖାଇଲୁ ଗୋ ଦହି । କଉଡ଼ୀ ମାଗନ୍ତେ ପଛେ ନାହିଁ ପାଇବଇଁ । ୭୫ । କଉଡ଼ୀ ନ ଦେଲେ ମୁକ୍ତି ଯିବୁ ସଙ୍କଟରେ । ତି ବୋଲିବେ ଗ୍ରାମଜନେ ତ ବୋଲିବେ ଘରେ । ୭୬ । ସହଜେ

ସ୍ତ୍ରୀ ଅବଳା କହନ୍ତି ଗୋ ନ ଜାଣ । ଧର୍ମ ଅଧର୍ମ କଥାକୁ ନ କର
କାରଣ ।୭୮। କର ଦେଇ ନ ପାରିବୁ ଦ୍ରବ୍ୟ ବନ୍ଧା ରଖ । ତାହିଁ-
ପାଇଁ ଉପବନ୍ତ ହେଉଛି ବିମୁଖ ।୭୯। ଅମ୍ଭ ପକ୍ଷେ ଅପୁଚ୍ଛନ୍ତି
ଅମ୍ଭ ନୃପବର । ବନ୍ଧା ମାଲ ଦେଇ ଟଙ୍କା ନେବ ତାଙ୍କଠାରୁ ।୮୦।
ବୋଇଲୁ ଦୁଇ ସ୍ୱଉତ ଖାଇଥିଲେ ଦହି । କଉଡ଼ି ନ ଥିବା
ଯୋଗୁଁ ମୁଦ ବନ୍ଧା ଦେଇ ।୮୧। ଏମନ୍ତ ବୋଲନ୍ତେ ତାଙ୍କୁ
ଦେବେ ତୋର ଧନ । ଆଗରେ ଯାଉଛୁଁ ଅମ୍ଭେ କହିଦେବ ପୁଣ ।
ଏମନ୍ତ ବୋଲିଣ ମୁଦ ମାଣିକୀକି ଦେଲେ । ଅନେକ ପ୍ରକାରେ
ତାକୁ ବୁଝାଇ କହିଲେ ।୮୩। ମୁଦ୍ରିକା ଦେଖି ମାଣିକୀ ମନେ
ଭୟ କଲା । ବୋଲଇ କେମନ୍ତ କରି ରଖିବଇଁ ଭଲା ।୮୪।
ସ୍ୱଜାଙ୍କ ସ୍ୱଉତ ଏ ଯେ ହେବ ନାହିଁ ବାଧା । ପୁଣହିଁ ସେହି ମୁଦକ
କଲା ଲେଉ ଶ୍ରଦ୍ଧା ।୮୫। ବୋଇଲା ଯାଅ ହେ ଏବେ ପାଇଲି
ମୁଁ ସବୁ । ତୁମ୍ଭ ଲାଗି ଦିନ ନ ସରିବ ଖାଇବୁ ଭାରୁ ।୮୬। ତୁମ୍ଭ ସଙ୍ଗେ
ଥିବ ପାଇଁ ମନେ ଅଛି କଥା । ମାଡ ଅନୁଘଣେ ମୋତେ ଦେଇ
ଗଲ ଚିନ୍ତା ।୮୭। ଏମନ୍ତ ଶୁଣିଣ ଦୁଇଭାଇ ଗଲେ ଚଳି ।
ତହୁଁ ସୁଅ କଥା ଗୋଷ୍ଠୀ କେହ୍ନୁ ବାକ୍ୟ ଛାଳି ।୮୮। ତାଙ୍କ ପଛେ
ମାଣିକୀ ଯେ ଛନ ଛନେ ଚାହେଁ । ଦର୍ପ କନ୍ଦର୍ପବାଣରେ ଅଙ୍ଗ
ଦେଉ ଦହେ ।୮୯। ଧେନୁ ବତ୍ସକୁ ନ ଦେଖି ଧାଅଇ ଯେମନ୍ତ ।
ଚନ୍ଦ୍ର ବିହୂନେ କୁମୁଦ ବଞ୍ଚିବ କେମନ୍ତ ।୯୦। ଘରକୁ ନ ଯାଇ
ପଥ ଚାହିଁ ଅଛି ସେହୁ । ଅଇଲେ ନୃପତି ନେବ ବନ୍ଧାଧନ ଦେଇ ।
ଦୁଇଭାଇଙ୍କ ବଚନ ଘଟିବଟି ଯେବେ । ମାଣିକୀର ମନ ବାଞ୍ଛା ପୂର୍ଣ୍ଣ
ହେବ ତେବେ ।୯୨। ଏହି ପ୍ରାୟ ଚିହ୍ନି ଚିହ୍ନି ଦଶିଲା ଯେ ସୈନ୍ୟ ।
ବହୁତ ହରଷ ହେଲା ମାଣିକୀର ମନ ।୯୩। ସଜ୍ଜିତ ଦୁହିଙ୍କ
କଥା ଘଟିଲା ଯେ ଅପେ । କୋଟିନିଧି ଧନ ପାଇ ଯେସନେ ହେଲେ
ଖୁସି ।୯୪। ମାଣିକୀର ନିକଟରେ ସୈନ୍ୟ କଲି ମିଳ । ବଚନ

ନଷ୍ଟରେ ଦେଖି ବୃଷଭ ଦୁନ୍ନାଳ । ୯୫ । ଦେଖି ରାଜା ସୈନ୍ୟ ବଳ ହୋଇଲେ ଚାଟକା । ଯୃପର ଯୁବା ଗଣିକା କାହିଁ ନାହିଁ ଦେଖା । ଜବା ସ୍ୱର୍ଗ ଅପସରୀ ଯକ୍ଷ ବିଦ୍ୟାଧରୀ । ରମ୍ଭା କି ମେନକା ଏ ପାର୍ବତୀ ସ୍ୱର୍ଗ ନାରୀ । ୯୬ । ମୁଖରେ କି କୋଟି ଶଶି ବନ୍ଦନ କରନ୍ତି । ଜବା ଅପୁରୁଣୀ ଏତ ମନ୍ଦ୍ୟୁକୁ ଧରନ୍ତି । ୯୮ । ପାତ୍ରମନ୍ତ୍ରି ବୋଲୁଛନ୍ତି ଓଡ଼ିଶା ରାଜାଙ୍କୁ । ଏ ନବୀନା ପର କନ୍ୟା ନାହିଁ ଦେଖିବାକୁ ।୯୯। ନୃପତି ବୋଲନ୍ତି ସେ ଯେ ଅଟେ କେଉଁ ଜାତି । କାହିଁ ପାଇଁ ଏକା ହୋଇ ଆସିଛି ଯୁବତୀ । ୧୦୦ । ପଚାରନ୍ତି ଚାରଗଣେ ଶୁଣ ଗୋ ସୁନ୍ଦରୀ । କେଉଁଠାରେ ଘର କେଉଁ ଜାତି ଗୋ ଭ୍ରମରୀ । ୧୦୧ । କାହିଁ ପାଇଁ ଏଠାବରେ ଉଭା ହୋଇଅଛୁ । ବଚନ ନ କହି ଅଡ଼ଭଙ୍ଗୀରେ ଚାହୁଁଛୁ । ୧୦୨ । ଶୁଣି ଦର ଦର ହସି କହଇ ମାଣିକୀ । ଦୋଷ କ୍ଷମା କରିବାରେ ହେନ ମୋ ରାଣିକି । ୧୦୩ । ଜାତିରେ ମୁଁ ଗଉଡୁଣୀ ମାଣିକୀ ମୋ ନାମ । ଦହି ଦୁଧ ବେପାର ଯେ ଅଟେ ଅମ୍ଭ କାମ । ୧୦୪ । ଏହି ଗ୍ରାମେ ଘର ଯେ ମୋହର ଅଟେ ସିନା । ଏହିଠାରେ ନିତ ବିକୁ ଦହି ଦୁଧ ଛେନା । ୧୦୫ । ଦୁଇରାଉତ ଯେ କଳା ଧଳା ଘୋଡ଼ା ଚଢ଼ି । ଦହି ଖାଇ ନ ଦେଇଣ ମୋହର କଉଡ଼ି । ୧୦୬ । କଉଡ଼ି ମାଗନ୍ତେ ହାତ ମୁଦି ବନ୍ଧା ଦେଲେ । ଭୁମ୍ଭଠାରୁ ନେବା ପାଇଁ ମୋତେ କହି ଗଲେ । ୧୦୭ । ବୋଇଲେ ଆମ୍ଭର ରାଜୁ ଆସୁଛନ୍ତି ପଛେ । ମୁଦି ଦେଇ ତୋହର କଉଡ଼ି ନେବୁ ଠିକେ । ୧୦୮ । ତହିଁ କାରଣୁ ମୁଁ ପଥ ରହିଅଛୁ ଜଗି । ମୁଦି ନେଇ ମୋହର କଉଡ଼ି ଦିଅ ବେଗି । ୧୦୯ । ଦଅନ୍ତେ ଛପା ମୁଦ୍ରିକା ରାଜୁ ହେଲେ ତୋଷ । ସଙ୍ଗେ ମହାପ୍ରଭୁ ଆଗେ ଗଲେ କାଞ୍ଚିଦେଶ । ୧୧୦ । ମୁଦି ରଖି ଧନ ଦେଇ ପ୍ରଶଂସା କରନ୍ତି । ପ୍ରଭୁ ଯିବା କଥା ଯାହା କହିଲୁ ଯୁବତୀ । ୧୧୧ । ଆଅ

ଗୋ' ଅମ୍ଭେ ଯାଉଛୁଁ ଦେଖଉଛ ଉତ୍କଳ । ଏଠାବକୁ ଦଶଦିନ ପଥ
ଜାଣ ଦୂର । ୧୧୨ । ଶୁଣି ନେଇ ରାଜା ଗଲେ ହରଷିତ ହୋଇ ।
ମାଣିକୀ ତପଣେ ଯାଇ ସଦନେ ମିଳଇ । ୧୧୩ । ଲାଗିଲା ଗୃହ
ବେପାରେ ମନ ସ୍ଥିର କରି । ଶୁଭ ତାଙ୍କ କଥା ମନ ନୁହଇ ପାଶୋରି ।
ମୁନି ହରି ବ୍ରହ୍ମ ପ୍ରବେଶ କାଞ୍ଚି ନଗ୍ରେ ଯାଇଁ । ପଞ୍ଚ ରାଜ ପ୍ରାପ୍ତେ ଶୂନ୍ୟ
ଦେଲାକ ନଜରାନ । ୧୧୫ । ନସକର ଯେନ ରାଜା ଚଳନ୍ତି
ହବଟେ । କାହାର ଶସ୍ତ୍ର ବନ୍ଧୁକ ନା କଟେ । ୧୧୬ । ସମୁଦ୍ର
ଲହରୀ ପ୍ରାୟ ଅସୁଛନ୍ତି ମାଡ଼ି । ଘୋଡ଼ା ହାତୀ ଚମତ୍କାର ଲାଗିଅଛି
ଧାଡ଼ି । ୧୧୭ । ବାଣମାନଙ୍କରେ କଟେ ସଜାଡ଼ି ଅଛନ୍ତି । ଶବ୍ଦ
ହେଲେ ପ୍ରାଣ ନା ପାଇବ ଅଗ ଘାନ୍ତି । ୧୧୮ । ଦକ୍ଷିଣ ରାଜାର
ଦଣ୍ଡେ ପୂରିଲାଟି କାଳ । ଧଳା କଳା ଘୋଡ଼ା ଚଢ଼ି ଗଲେ ନନ୍ଦବାଳ ।
ରୂପରେ ଅଛନ୍ତି ଅସି ନ ଜାଣନ୍ତି କେହି । ପୁରୀ ରାଜା ମନରେ
ଯେ ଗରବ କରଇ । ୧୨୦ । ମୋହ ଯୋଗୁଁ ଅହିଛନ୍ତି ପ୍ରଭୁ
ଜଗନ୍ନାଥ । ସେହିଠାରୁ ଯେ କାଞ୍ଚିଦେଶ ଅଟଇ ଦୂରପଥ । ୧୨୧ ।
ପଇକାଙ୍କମାନେ ସବୁ ଅଗେ ଅଗେ ଯାଇଁ । କେ ବୋଲଇ ଆଉ କେତେ
ପଥ ଅଛି ଭାଇ । ୧୨୨ । ସଙ୍ଗେ ତମ ତମ ରାଗେ ହୋଇ କୋପା-
ନଳ । ସମସ୍ତଙ୍କ ହୃଦୟରେ ଜଳଇ ଅନଳ । ୧୨୩ । ଖରତର
ଦିନ୍ନାଙ୍କଣ ଯେ ଧାବନ୍ତି ସକଳ । କାଞ୍ଚିଦେଶ ନିକଟରେ ମିଳି
ସୈନ୍ୟବଳ । ୧୨୪ । ପାଦଘାତେ ଦମ ଦମ ଚମକଇ ମହୀ ।
କାଞ୍ଚି ତୋଟାରେ ସମସ୍ତେ ମିଳିଲେକ ଯାଇଁ । ୧୨୫ । ଶ୍ରମ ପାଉନ୍ତି
ସେଠାରେ ପାଇଁ ପାଦପୀଡ଼ା । ହାତୀକି ହାତୀଆ ରଖେ ସଇସ ଯେ
ଘୋଡ଼ା । ୧୨୬ । ପକାଇ ରାଉଟି ତହିଁ ରହିଲେ ସେ ଦଳ ।
ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି ତପନ । ୧୨୭ । ହର ହର ପଡ଼ିଗଲା
କାଞ୍ଚିଦେଶ ଖଣ୍ଡି । ଶୁଣି ସେ ଦେଶର ଜନ ଭୟରେ ଦଗଣ୍ଡି ।୧୨୮।
ଶୁର ଯାଇଁ ହଲବଲଣ୍ଡରଙ୍କୁ କହିଲେ । ଓଡ଼ିଶା ନୃପତି ଭୂମି ଦେଶକୁ

ଅଇଲେ । ୧୨୯ । ଭଲମନ୍ଦ କେହିଁ କଥା ଜଣା ନୋହେ କିଛି ।
ଗ୍ରାମନଗ୍ରପାନ୍ତ ଡୋଳାରେ ସୈନ୍ୟ ଘେନିଅଛି । ୧୩୦ । ଭୂମ୍ୟେ ଯାଇଁ
ଦନ୍ଦାକର ଅସିଥିଲି ଯେଣୁ । ଶୁଣି କୋପମୂର୍ତ୍ତି ହୋଇ ଆସିଅଛି
ତେଣୁ । ୧୩୧ । ବୋଲନ୍ତି ଯେ ମହାରାଜା ଶୁଣ ମନ୍ତ୍ରୀବର ।
ପଦ୍ମାବତୀ ନାମକନ୍ୟେଣ ଜାଣ ଆଣିବାର । ୧୩୨ । ତେଣୁ ପଛେ ସମର
କରୁ ନିଅ ମୁ ନ ଦେବ । ସୈନ୍ୟ ସାଜି ନଷ୍ଟେ ପ୍ରାଣୀ ଅଜ ବାର ନେବ ॥
ଶୃଗାଳ ଲୋକ ସେ ଜନ ଅଟେ ହୀନବୁଦ୍ଧି । ସମରେ ଜିଣି ନ ଗିବ
ହେଲେ ପଣ୍ଡିବାଗି । ୧୩୪ । ନଗରେ ବଜାଇ ସୈନ୍ୟ ମାଜବଢ଼ି
ଦାର । ନଗ୍ନପ୍ରାୟ ରୁଧିର ଚିତା ଘେନିବ ତାହାର । ୧୩୫ । ଦକ୍ଷିଣ-
ଦେଶ ରାଜାର ଉଡ଼ନ୍ତି ଯେ ହଂସା । ଶ୍ରୀ ଜଗନ୍ନାଥଙ୍କୁ ଦୃଣି
କରିଥିଲା ଖେସା । ୧୩୬ । ଭାବନାରେ ରହିଲେ ଯେ ଯଦ୍ଧ ହେଲା
ବାଢ । ଯେ ଯାହାର ମନ୍ଦିରେ ଯେ ଗଲେ ପାତ୍ର ମନ୍ତ୍ରି । ୧୩୭ ।
ଓଡ଼ିଶା ନୃପତିଙ୍କର ଲାଗିଛି ଗହଳ । ରଜଣୀ ଯେ ରହା ବଢ଼ା
ଭୋଜନର ବେଳ । ୧୩୮ । ଭୋଜନ ସାରଣ ସଙ୍ଗେ ନିଦ୍ରା ଗଲେ
ତହିଁ । ପ୍ରଭୁଙ୍କର ପାଦପଦ୍ମେ ଚିତ୍ତ ମନ୍ତ ଦେଇ । ୧୩୯ । ସେ ଦିନ
ରଜନୀ ତହିଁ ନିଦ୍ରା ଯେ ହରଲେ । ପ୍ରଭାତ ଶେଷରେ ରବି
ଉଦୟ ହୋଇଲେ । ୧୪୦ । ସ୍ୱପ୍ନଲେ ଭାବ କୋଳାଳ ଉଠିଲେ
ଯେ ଜନ । ପଥିକ ପଥରେ ଥିଲେ କଲେ ଯେ ଗମନ । ୧୪୧ ।
ସେହି ପ୍ରାୟେ ପ୍ରଭୁଙ୍କ ଚରଣେ ଭଳ ଲଦ୍ୟେ । ପୁରୋତ୍ତମ ଦ ସ ମନ
ଛନ ଛନ ହୋଏ । ୧୪୨ ।

---

## ସପ୍ତମ ଛନ୍ଦ ।

ଏଥିଅନ୍ତରୁ ଯେ ଶୁଣ ଅପୂର୍ବ ଚରିତ । ଓଡ଼ିଶା ନୃପତି ସୈନ୍ୟ
ହେଲେ ଶୌଚବନ୍ତ ।୧। ସ୍ନାନ ଭୋଜନ ସାରଣ ଯୁଦ୍ଧକୁ ବାହାର ।
ହାତୀପରେ ମହାରାଜା ହେଲେକ ସୁଆର ।୨। ବାଜଇ ବାରବାଜଣା

ତାଳ ତାଳ ପଡ଼େ । ଜେ ତାହାକୁ ଧରଣ ଯେ ମାରନ୍ତି ପଡ଼େ ।୩।
ତାହା ଅଶ୍ୱ ମଣ୍ଡି ଛିଣ୍ଡି ବହଇ ରୁଧିର । ଏଣେ ତେଣେ ସମସ୍ତେ
ପଳାନ୍ତି ହୋଇ ସ୍ଥିର ।୪। କେ ବରଛ ଧରିଅଛି କେ ଫର
ବୁଲାଏ । କାଳୀ ଜିହ୍ୱାପ୍ରାୟ ଲହ ଲହ କେ ହଲାଏ ।୫। ପିଙ୍ଗଳ
ନେତ୍ର ପସ୍ୱପ୍ନେ ଶୃଦାନ୍ତି ଭଗ୍ନି । ଜନ ସୈନ୍ୟଙ୍କୁ ମାରୁଣ ପକାଇଣ
ଲୋଟି ।୬। ଗହଳ ଚହଳ ରଣ ଯୁଦ୍ଧ ଲାଗେ ଘୋଳ । କାଞ୍ଚି-
ଦେଶକୁ ବିପକ୍ଷ ପଡ଼ିଲା କେବଳ ।୭। ଧଳା ଘୋଡ଼ା କଳା ଘୋଡ଼ା
ଚଢ଼ି ଭଗବାନ । ଗୁପତରେ ଯୁଦ୍ଧକର ମାରୁଛନ୍ତି ସୈନ୍ୟ ।୮।
ନୃପଙ୍କ ଛଳରେ ଦେଖ ଲାଗିଛି ଅହଙ୍କ । ରମ୍ଭାପତ୍ର ବାତଘାତେ
ଯେସନ ଥରେ ଅଙ୍ଗ ।୯। ସେହିପ୍ରାୟ କମ୍ପମାନ ହେଉଛନ୍ତି
ସଙ୍ଗ । ପୁରୁଷୋତ୍ତମ ରାଜା ମନେ କରନ୍ତିଲା ଗଙ୍ଗ ।୧୦। ଅନ୍ତର୍ଗତ
ବାରତା ଜାଣନ୍ତି ଅନ୍ତର୍ଯ୍ୟାମି । ତାହାଙ୍କୁ ମାର ତାହାଙ୍କୁ ରକ୍ଷାକର
ସ୍ୱାମି ।୧୧। କାଞ୍ଚିଦେଶ ସୈନ୍ୟ ବଳ ଅଟେ ବଳଅର । ସମୁଦ୍ର
ଲହରୀ ପ୍ରାୟ ଗର୍ଜ୍ଜନ ଘୋର ।୧୨। ମସ୍ତମର ଧସ୍ତଧସ୍ତ ହେଲେ
ପିଚ୍ଛାପିଟି । ଗଦାପ୍ରହାରେ କାହାର ଦେହ ଯାଏ ଫାଟି ।୧୩।
ଯୁବକଙ୍କ ମହତ ନଅନ୍ତି ଧରେ ପଥେ । କାହାକୁ ବୃକ୍ଷେ ଟାଙ୍ଗନ୍ତି
ଲଗାଇଣ ଫାସି ।୧୪। କାହା ଖଣ୍ଡପରେ ବସି ଉପାଡ଼ନ୍ତି ଛଦ ।
କେ କାହାକୁ ଛାଡ଼ି ଦଏ ବହୁ ଦଣ୍ଡ ଲଭ ।୧୫। ଓଡ଼ିଶା ରାଜାର
ସୈନ୍ୟ ଯନ୍ତ୍ରି ଗଲେ ମରି । ପଳାଇବ ବୋଲି ବାହ୍ମଣଙ୍କ ଦଣ୍ଡଧାରୀ ।
ଧରିବ ଭାବନ୍ତି ସୈନ୍ୟ ନାଶ ଗଲେ ହାର । ପୁଣିହିଁ ଦୟାଳୁ ବହୁକେ
ପ୍ରଭୁ ଚକ୍ରଧର ।୧୭। କଳବଳେଣରଙ୍କୁ ଯେ ପୁଣି ଗୋଡ଼ାଇଲା ।
ଅଗ୍ନିଶିଖା ପ୍ରାୟ ତହିଁ ଧୂମାକ୍ଷତ ହେଲା ।୧୮। ଶରଧ୍ୱଜ ଉଡ଼ିଲା
ଯେ ନ ଦଶଇ ଦଗ । କୌଣକ ତହିଁ ଦ୍ୱିଜକୁ କଲେ ଛନ୍ଦା ଶଙ୍ଖ ।
ତାହାର ଛିଅନ୍ତି ଧର ଦେବ ଯେ କହିଲା । ରଣଯୁଦ୍ଧରୁ ସେ
ପୁଣି ଲକ୍ଷ୍ମୀମାନ ହେଲା ।୨୦। ଉତ୍ତମ କହନ୍ତି ଅସି ନୃପତ

ସମୀପେ । କାଞ୍ଚି ସ୍ୱଜନ ପଳାଇ ଯାଉଛନ୍ତି ଗୋପେ ।୨୧।
ଦୁଲଣୀକ ସଙ୍ଗେ ଯେନ ଯାଉଛନ୍ତି ପଳାଇ । ଏବେ ଯୁଦ୍ଧ ଅକାରଣ
ହେବ କାହିଁ ପାଇଁ ।୨୨। ଗୋଡ଼ାଇ ତାହାଙ୍କୁ ସିଂହଦ୍ୱାର ଠାରେ
ମିଳ । ଦେଖିଲେ ଗଡ଼କୁ ଚାରି ନଦୀ ଅଛି ଘେରି ।୨୩। ପଥରର
ବାଡ଼ମାନ କରିଛନ୍ତି ନିର୍ମାଣ । ବଜ୍ର କୀଳଣି କବାଟ ଯେସନେ ପାଷାଣ ।
ପିମ୍ପୁଡ଼ି ପଶିବାକୁ ଛିଦ୍ର ନ ମିଳଇ ବାଟ । ବେଢ଼ିଅଛି ଓଡ଼ିଶା ନୃପତି
ସଙ୍ଗ ଥାଟ ।୨୫। ଏହିକାଳେ କାଞ୍ଚୀରାଜା ଇଷ୍ଟଙ୍କୁ ସୁମରି । ଭକ୍ତ-
ଗଣପତି ପାଦେ ଭକ୍ତି ଦୃଢ଼ ଥାପି । ଚରଣ ତଳରେ ପଡ଼ି କହଇ
ବଚନେ । କାଞ୍ଚିଦେଶ ନଷ୍ଟ ଅଟେ ହେଲା ଏତେକାଳେ ।୨୬।
ଲକ୍ଷ୍ମୀ ଛାଡ଼ି ପଳାଇଲେ ଜଳିଲା ମୋ ବସା । ଏତେବେଳେ ଗଣ-
ନାଥ କହୁଛ ଦୁର୍ଦ୍ଦଶା ।୨୮। ତୁମ୍ଭେ ନ ରଖିଲେ କିଏ ରଖିବାକୁ
ଅଛି । ଓଡ଼ିଶା ନୃପତି ସୈନ୍ୟ ସାଜିଣ ଆସୁଛି ।୨୯। ଶୃଗାଳ
ବୋଲିଣ ଲୋଅ ନ ହେଲ ଯେ ତାଙ୍କୁ । ଯୁଦ୍ଧ କରିବାକୁ ଆସିଅଛି
ମୋ ଗ୍ରାମକୁ ।୩୦। ମାଇଲା ବହୁତ ସୈନ୍ୟ ଗଡ଼ରେ ପଶିଲା ।
ଏବେ କାଞ୍ଚିଦେଶ ଧନଶିରୀ ଯେ ଦଶିଲା ।୩୧। କି କରିବ ବୁଦ୍ଧି
ଦିଶୁ ନାହିଁ ଗଣନାଥ । ତୁମ୍ଭେ ଭରସା ନୋହିଲେ ହେଲି ମୁଁ
ଅନାଥ ।୩୨। ଶୁଣି ଗଜମୁଖନନ୍ଦନ ଉଦରରେ ବସି । ବୋଇଲେ
ଗୃହେ ହୋ ଯିବା ତା ସୈନ୍ୟ ବିନାଶି ।୩୩। କେଡ଼େ ଯୋଦ୍ଧା
ଅଟଇ ସେ ଦେଖିବା ତା ଠାଣ । ମୂଷାରେ ନିଷ୍ଟେ ତାର ଅଳ୍ପ
ଜୀବ ପ୍ରାଣ ।୩୪। ଶୃଗାଳ ଗୋଠାକୁ ସିଂହ ଡରି ପଳାଉଛୁ ।
ସୈନ୍ୟ ବିନାଶ କରିଣ ଶୁଣ ପଥରେ ଅଛୁ ।୩୫। ଏବେ ଜନ୍ତୁ
ଯୁଦ୍ଧ ସ୍ଥାନେ ବିଜେ ଗଣପତି । ଯେଉଁଠାରେ ରାଜା ସୈନ୍ୟ କମ-
ଳାର ପତି । ତାହାଙ୍କୁ ଜିଣିବ କେହୁ ଅଛି ଏ ଜଗତେ । ବ୍ରହ୍ମା
ଶିବ ଭଜୁଥାନ୍ତି ଯାଙ୍କୁ ଅନୁବ୍ରତେ ।୩୭। ତାହାଙ୍କ ମାରିଣେ କେହୁ
ଅଟଇ ଭାଜନ । ସଚରାଚର ବ୍ରହ୍ମାଣ୍ଡ ଯାହାର ସର୍ଜ୍ଜନ ।୩୮।

ପୃଥ୍ୱୀ ଟଳମଳ ହେଲା ପଦାଘାତେ ପୁଣି । ଦେଖି ଓଡ଼ିଶା ନୃପତି
ଉଠେ ଶିର ଧୁଣି । ୩୯ । ଜନ୍ତ୍ର ବଜ୍ର ଅସି ଯେତେ ବାଜିଲା
ହୃଦୟରେ । ଶୂନ୍ୟରେ ଅଛନ୍ତି ହରି ରାଉତ ରୂପରେ । ୪୦ ।
ଯେତେବେଳେ କାଞ୍ଚୀରାଜା ଯୁଦ୍ଧକୁ ଥଇଲା । ଓଡ଼ିଶା ନୃପତି ତାକୁ
ଶର ଯେ ମାଇଲା । ୪୧ । ଶର ବୃଷ୍ଟି ହେଲା ଯେ ମିଥୁନ ମାସ
ଧାର । ଗୋଟାକ ପରେ ଗୋଟାଏ ପଡ଼ୁଅଛି ଧର । ୪୨ । ଶୂନ୍ୟେ-
ରହି ଶର ବୃଷ୍ଟି କରନ୍ତି ଶ୍ରୀହରି । ହାବୁଡ଼ା ଶର ଯେ କାଞ୍ଚିଦେଶ
ରାଜା ମାରି । ୪୩ । ବାହୁଡ଼ାଶର ପେଶିଣ ପକାଇଲେ ହାଣି ।
ନାଗଶର ପେଶିଲା ଯେ କାଞ୍ଚୀ ନୃପମଣି । ୪୪ । ତକ୍ଷଣ ଗରୁଡ଼ ଶର
ସ୍ମରି ଶ୍ରୀ ହରି । ଗରୁଡ଼କୁ ଦେଖି ଅହି ପଳାଇଲେ ଡରି । ୪୫ ।
ତାହା ଦେଖି ଗଣପତି ଇନ୍ଦୁର ପେଶିଲେ । କାଟଇ ଗଣ୍ଠି ବୃଜୁଲା
ପୁଣି ପଶେ ବଚଳ । ୪୬ । ଅନ୍ଧହେଲା କଳକାଳା କରୁଅଛି ମୂଷା ।
ମଞ୍ଜାରୀ ଅଗରେ ପୁଣି କଟିଛୁ ଭରସା । ୪୭ । ତାହା ଦେଖି
ଜଗନ୍ନାଥ କୋପାନଳ ହେଲେ । ଧଳା କଳା ମଞ୍ଜାରୀ ଯେ ଅଙ୍ଗୁ ଜାତ
କଲେ । ୪୮ । ମୂଷାକୁ ଗୋଡ଼ାଇ ପୁଣି ମଞ୍ଜାରୀ ଖାଉଛି । ବଇର-
ମାନଙ୍କୁ କେହୁ ସମାସ୍ୟା କହୁଛି । ୪୯ । ସମସ୍ତେ ଏହି ପରାସ୍ତେ
ପଳାଇଣ ଗଲେ । ମହାକାଳବାଣ କାଞ୍ଚୀରାଜାକୁ ମାଇଲେ । ୫୦ ।
କାଞ୍ଚୀରାଜାକୁ ବିନାଶ କଲେ ନରହରି । ରଣ ଜୟ କରି ଯେନ
ପଦ୍ମାବତୀ ନାରୀ । ୫୧ । ସଭାରେ ବିଜୟ ଅସି ହେଲେ ନୃପନାଥ ।
କୌନକ ସଙ୍ଗେ ବ୍ରାହ୍ମଣ କରଥିଲେ ସତ୍ୟ । ୫୨ । ନାସ୍ତି କଲା
ଝିଅକୁ ସେ ନ ଦେବଟି ବଭ୍ର । ସଭାରେ ପୁଛନ୍ତି ଯହିଁ ଲାଗିଅଛି
ସଭା । ୫୩ । ନଶାପ କରନ୍ତି ସଭାଜନମାନେ ତହିଁ । ଅହେ
ଦ୍ୱିଜବର ତୁମ୍ଭ ସାକ୍ଷି ଅଛି କେହି । ୫୪ । ସାକ୍ଷି ଥିଲା ଲୋକ ଯେତେ
ଉଠାଅ ଏଠାରେ । ସତ୍ୟ କି ଅସତ୍ୟ ବୁଝାଯିବ ତାହାଠାରେ । ୫୫ ।
ଦ୍ୱିଜବର ବୋଲନ୍ତି ସେ ଗାଈ ରଖୁଥିଲି । ଛତା ବାଡ଼ି କହେ

ଥିଲ ନାଗରେ ଗୋପାଳ ।୫୬। ଶୁଣି ଦ୍ୱିଜବର ଗଲେ ଗୋପାଳଙ୍କୁ ଛାଡ଼ି । ବଚନ ବୋଲଇ ଗୋରୂପଲେ ତାଙ୍କୁ ଦେଖି । ୫୭ । ତୁମ୍ଭେ ସଙ୍ଗ ଦେଖିଅଛ ବ୍ରାହ୍ମଣର ଗଛ । ଏବେ ନାସ୍ତି କରୁଅଛ ନ ଦେଇ ଦୁହିତା । ୫୮ । ଶୁଣ ତୁମ୍ଭେ ସେଠାବକୁ ବଚନେ କହିବ । ସହିରେ ସତ କହିବ ଯାହା ଦେଖିଥିବ । ୫୯ । ଶୁଣି ଗୋପାଳ ବୋଇଲେ ଅମ୍ଭେ ଯେ ନ ଯାଉଁ । ତାହାଙ୍କୁ ଭୁଞ୍ଜାଇଣ ଏଠାବକୁ ଅଣ । ୬୦ । ନ ଯାଉ ଅମ୍ଭେ କେଣିକ ଏଠାବରୁ ପୁଣି । ନଶାପ କର ତୁ ଯାଅ ତାଙ୍କୁ ଡାକିଅଣି । ୬୧ । ଶୁଣି ବାହ୍ମଣ ବୋଲଇ ତୁମ୍ଭଙ୍କୁ ନ ନେଲେ । ମୋହର ଯେ କାର୍ଯ୍ୟ ସିଦ୍ଧ ନୁହଇଟି ଭଲେ । ୬୨ । ତହୁଁ ସେ ଗୋପାଳ ବୋଲେ ଶୁଣ ହେ ଗୋସାଇଁ । ପଛରେ ଯାଉଛ ମୋର ନ ଅନାଅ ତୁହି । ଯେବେ ଅନାଇବୁ ଅମ୍ଭେ ନ ଯିବାଟି ବାବା । ତାଙ୍କି ତୋ କାର୍ଯ୍ୟ ହେଉ ବା ଅଥବା ନୋହୁବା । ୬୪ । ଏହୁପର ଆଗେ ଆଗେ ଚଳନ୍ତି ବ୍ରାହ୍ମଣ । ସହିଁଙ୍କ ପଛକୁ ଖଣ୍ଡୁଦୂରକୁ ଯାଇଁଣ । ୬୫ । ସେହିଠାବରେ ରହିଲେ ଗୋପାଳର ମୂର୍ତ୍ତି । ଆଉ ସେଠାରୁ ନ ଗଲେ ପ୍ରଭୁ ନାମ ତନ୍ତ୍ର । ୬୬ । ସର୍ବଲୋକଙ୍କୁ ବ୍ରାହ୍ମଣ ଡକାଇଣ ଆଣି । ଗୋପାଳଙ୍କୁ ପଶ୍ଚରନ୍ତି ନଶାପକୁ ଦେଇ ।୬୭। ସେହିଠାରୁ ସାକ୍ଷି ଯେ ଗୋପାଳ ନାମ ହେଲା । କୌତୁକ ଝିଅକୁ ଦ୍ୱିଜବର ବହା ହେଲା । ସତ୍ୟବାଦୀ ଦେଉଳ ବୋଲିଣ ହେଲା ନାମ । ଯୁଗଯୁଗକୁ ଏକଥା ହୋଇଲା ପ୍ରଧାନ ॥ ସତ୍ୟବାଦୀ ଦେଉଳ ପଛରେ ଯେ ରହିଲେ । ଜଗନ୍ନାଥ ସେହିଠାରେ ପୂଜା ହେଲେ । ୭୦ । ଶଧାଡାର ଗଡ଼ ଖୀର ଅଟଇ ଏମନ୍ତ । କାଞ୍ଚିଦେଶ ରଜା ମଲେ ସେ ଦେଶ ନଷ୍ଟନ୍ତୁ । କାଞ୍ଚିଦେଶକୁ ଯେ ଗାଈ ମଖ୍ରୀଷ୍ଟିତ ନେଲେ । ସେହି ଦିନଠାରୁ ଭକ୍ଷ୍ୟ ଘୃତ ପକାଇଲେ । ୭୨ । ନଡ଼ିଆ ଘୃତ ଯେ ପ୍ରଭୁ ଭକ୍ଷ୍ୟ ପଡ଼ୁଥିଲା । ଏବେ ଦୁଗ୍ଧ ଘୃତ ପଡ଼ି ନଇବେଦ୍ୟ ହେଲା । ୭୩ ।

ଶୂନ୍ୟରେ ଚଳିଲେ ହରି କ୍ଷେତ୍ରରେ ପ୍ରବେଶ । ଏଣେ ନିଦ୍ରାରୁ ଚେଇଁ ଅପୂର୍ବ ନରେଶ । ୭୪ । ଶ୍ରୀ ଗୁଣ୍ଡିଚା ଯାତ ଗୋଟି ହେବ କାଲି ଦିନ । ଉଦ୍‌ଦିନ ପଥକୁ ଯେ ଯିବା କେମନ୍ତେଣ ॥ ଆଜ ଯେ ନେତ୍ରୋତ୍ସବ ନେତ କଲେ ଭଲ । ଉନ୍ନ ରଥେ ମଣ୍ଡଣି ହୋଇବ ସମତୁଲ । ୭୫ । ମହାରାଜା ମନେ ମନେ ବିଚାରଇ ଖ୍ୟାବନ୍ତୀ । ଅଟନ୍ତି ମନ୍ଦିରେ ନ କରିବା କିଛି ଚିନ୍ତା । ୭୬ । ସତେ ଜଗଦ୍ବନ୍ଧୁଙ୍କର ହୋଇବ ଦର୍ଶନ । ସତେ କି ପନ୍ଥେଣ୍ଡି ବଜେ କରିବ ଯାଉଣି । ଉଦ୍‌ଦିନ ପଥ ଗୋଟି ଏକାଦିନେ ଯିବା । ଉଦ୍ଧୁର ନ କର ଅଛ ଏଠାରେ ନ ଥିବା । ୭୯ । ସୈନ୍ୟବଳ ଚଳିଲେ ଯେ ପ୍ରଭୁଙ୍କୁ ସ୍ମରି । ଅନନ୍ତ ମନରେ ସର୍ବେ ଗାଉଛନ୍ତି ହରି । ୮୦ । ପ୍ରବେଶିଲେ କ୍ଷେତ୍ରବରେ ମହାରାଜା ଯାଇ । ଶ୍ରୀ ଗୁଣ୍ଡିଚାଯାତ୍ରା ସେହି ଦିନ ଯେ ଅଟଇ । ୮୧ । କାଞ୍ଚିଦେଶ ଗଲେ ଯେ ବିରକ୍ତେ ହେଲା ଶେଷ । ପଦ୍ମାବତୀକନ୍ୟା ମନ କରଇ ସନ୍ତୋଷ । ୮୨ । ସୁଖେ ସଦନେ ରହିଲେ ନାହିଁ ଦୁଃଖ ଭ୍ରାନ୍ତି । ପ୍ରଭୁଙ୍କ କୋଳେ ବସିଣ କମଳା କହନ୍ତି । ୮୩ । କାଞ୍ଚୀରାଜା ବିନାଶି ଆଣିଲ ପଦ୍ମାବତୀ । କାଞ୍ଚୀକାବେରୀ ମହିମା ରହିଲା ଯେ ଖିତି । ୮୪ । ଶରଣ ସୋଦର ତୁମ୍ଭେ ଅଟ ଭଗବାନ । ଭକତ ଜନଙ୍କ ବନ୍ଧୁ ଦୁଃଖିଙ୍କ ଜୀବନ । ୮୫ । ନାମ ଯେ କରୁଣାକର ଭକ୍ତବତ୍ସଳ ଦାତା । ସଂସାରଖାନ ମଧ୍ୟେ ତୁମ୍ଭେ ଅଟ ମାତା ପିତା । ୮୬ । ଦୁଷ୍ଟଙ୍କୁ ନିବାରି ସନ୍ଥ ଜନେ ପ୍ରତିପାଳ । ଦାସବତ୍ସଳ ଯେ ତୁମ୍ଭ ନାମ ବନମାଳ । ୮୭ । ପନ୍ଥେଣ୍ଡି ବିଜୟ କଲେ ଦେବ ନରହରି । ଚନ୍ଦନ ଛେଞ୍ଚି ପକାଏ ନୃପତି ପହଁରି । ହୋଇଲା ଯେ ସନ୍ଧ୍ୟା ଧୂପ ଅବକାଶ ବେଳ । ଭକ୍ତବୃନ୍ଦେ ସ୍ତୁତି କରୁଅଛନ୍ତି ସକଳ । ୮୯ । ଜୟ ଜୟ ଅନନ୍ତ ଉତ୍କଳ ପାଳକ । ଅଖିଳ ବ୍ରହ୍ମାଣ୍ଡ ନାଥ ମସ୍ତେ କୃପାଦିଅ । ୯୦ । ରଜନୀ ହୋଇଲା ଯହୁଁ ଦ୍ବିତୀୟ ପ୍ରହର । ଦେଉଳ ସୋଧିଣ ଗଲେ ପଣ୍ଡା ଯେ

ସୁଅର । ୯୧ । ଶଙ୍ଖନାଭି କଣ୍ଠକ ଯେ ଜଘବଦ ଦେଲା । ପୁରୋଷୋତ୍ତମ ଦାସ ଯେତେ ଉଜାଗର ଥିଲା । ୯୨ । ପ୍ରଭୁଙ୍କୁ ସ୍ମରି ପଦ କଲା ଯେ ରଚନ । ଅଙ୍କରେ ବଢିଲା ଯାହା କଲି ମୁଁ ଲିଖନ । ୯୩ । ଦବା ଜଣି ଭାବ ଭାବ ପୂରିଲା ମୋ ମତି । କହୁ ନ ମାଗଇ ମୁଁ ଯେ ମାଗଇ ଭକତି । ୯୪ । ଏ କାଞ୍ଚୀ ପୁରାଣ ପଦ୍ୟ କଲି ମୁହିଁ ଶେଷ । ଭାବରେ ଭଣିଲେ ଏହା ପୁରୋଷୋତ୍ତମ ଦାସ ॥

——:O:——




INTED AT THE UNION PRINTING WORKS, BY P. C. MNUDUL

# ବିଜ୍ଞାପନ ।



ଏତଦ୍ଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆଯାଉଅଛି କି ଯେ, ଏହି ପୁସ୍ତକ ପ୍ରକାଶକ କମ୍ପାନୀ, ପ୍ରକାଶ ନ ହୋଇଥିବା ପୁସ୍ତକମାନ ପ୍ରକାଶ କରିବା ଏହାର ପ୍ରଧାନ ଉଦ୍ଦେଶ୍ୟ ଅଟେ । ଏହି କମ୍ପାନୀ ବହୁପରିଶ୍ରମ ସହ ଓ ବହୁ ଅର୍ଥ ବ୍ୟୟରେ ପ୍ରକାଶ ନ ହୋଇଥିବା ପୁସ୍ତକମାନ ପ୍ରକାଶ କରି କଟକ ପ୍ରିଣ୍ଟିଂକମ୍ପାନୀ, ଅରୁଣୋଦୟ, ଜଗନ୍ନାଥ ପୁସ୍ତକାଳୟ, ଚନ୍ଦ୍ରୋଦୟ ପୁସ୍ତକାଳୟ, ସହଯୋଗୀସମିତି ଓ ଷ୍ଟେଟିସ୍ନନ୍ ପ୍ରେସରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ଯେବେ କୌଣସି ଗ୍ରାହକ ଏହି କମ୍ପାନୀରେ ପ୍ରକାଶ ହୋଇଥିବା ପୁସ୍ତକ ନେବାକୁ ଇଚ୍ଛା କରନ୍ତି ତେବେ ଉପରଲିଖିତ ଠିକଣାମାନ ଓ ନିମ୍ନଲିଖିତ ଆମ୍ଭଠିକଣାକୁ ପତ୍ର ଲେଖିଲେ ଏହା ଛଡ଼ା ଅନ୍ୟ ଅନ୍ୟାନ୍ୟ ପୁସ୍ତକମାନ ଅବିଳମ୍ବେ ପାଇ ପାରିବେ ।

ପୁସ୍ତକ ପ୍ରକାଶକ କମ୍ପାନୀ
ପେଖବଜାର, କଟକ । } ଶ୍ରୀ କୃଷ୍ଣପୂର୍ଣ୍ଣ ମହାପାତ୍ର ।